# କପିଳସଂହିତା ।

ଥ ମହାପାତ୍ର

ସାମନ୍ତ ଶ୍ରୀଗୋପୀନାଥ ମହାପାତ୍ର କାବ୍ୟତୀର୍ଥ ।

# କପିଳସଂହିତା ।



କଟକ ରେଭେନ୍ସା ବାଲକାକଲେଜର ସଂସ୍କୃତ ଅଧ୍ୟାପକ
ସାମନ୍ତ ଶ୍ରୀଗୋପୀନାଥ ମହାପାତ୍ର କାବ୍ୟତୀର୍ଥଙ୍କ ଦ୍ୱାରା.

ବିରଚିତ ।

ପୁରୀର ଜମିଦାର ଓ ସରକାରୀ ଓକିଲ ଶ୍ରୀଯୁକ୍ତ ବାବୁ
ଲୋକନାଥ ମିଶ୍ର ଓକିଲ ମହୋଦୟଙ୍କ ସାହାଯ୍ୟରେ

ପ୍ରକାଶିତ ।



Printed by
A.C. Chakraverty,
Orissa Printing Works, Puri.
1923.

ସନ ୧୯୨୩ ମସିହା ।      ମୂଲ୍ୟ ୦ ।/ ମାତ୍ର ।

# KAPILA SAMHITA.

BY

**Samanta Shree Gopinath Mahapatra**
**Kavyatirtha**

*Sanskrit teacher College classes attached to the Revenshaw Girls' High English School, Cuttack.*

*Published by*

**Badu Lokanath Misra. Vakil.**

Zamindar and Government Pleader,
Puri.

Ptd. by A. C. Chakraverty,
Orissa Printing Works, Puri.
1922.

*Price As. 3/-*

# ଭୂମିକା ।

ଏହି ପୁସ୍ତକ ସାଂଖ୍ୟଦର୍ଶନପ୍ରଣେତା କପିଳମହର୍ଷିଙ୍କରଚିତ ଅତି ପ୍ରାଚୀନ ଅପ୍ରକାଶିତ ସଂସ୍କୃତପଦ୍ୟାତ୍ମକ କପିଳସଂହିତାରୁ ସରଳ ଉତ୍କଳପଦ୍ୟରେ ସମ୍ପୂର୍ଣ୍ଣ ଅନୁବାଦିତ । ଏଥିରେ ଉତ୍କଳୀୟ ପ୍ରଧାନ ୨ ତୀର୍ଥାଶ୍ରମ ଦେବଦେବୀମାନଙ୍କର ବିଷୟ ସଂକ୍ଷେପରେ ବର୍ଣ୍ଣିତ ଅଛି । ପୂର୍ବକାଳରେ ପୁଷ୍କରବନସ୍ଥିତ ସନକାଦଋଷିମାନେ ଭରଦ୍ୱାଜମହର୍ଷିଙ୍କୁ ଧର୍ମ୍ମସ୍ଥାନ ବିଷୟରେ ପ୍ରଶ୍ନକରି ଯାହା ୨ ଶୁଣିଥିଲେ ସେ ସମସ୍ତକଥା ଏହି ଗ୍ରନ୍ଥରେ କପିଳ ସତ୍ୟଜିତ୍‌ରାଜାଙ୍କୁ ବୁଝାଇ ଅଛନ୍ତି । ଅନାବଶ୍ୟକ ବୋଧ ହେବାରୁ କେତେକ ବର୍ଣ୍ଣନାତ୍ମକ ବିଷୟ ଉପେକ୍ଷିତ ହୋଇଅଛି । ଏଥିରେ ଧର୍ମ୍ମବିଷୟକ ଉପଦେଶ ଥିବାରୁ ତାହା ସଧାରଣ ବୋଧାର୍ଥ ପ୍ରକାଶକଲି । ଏହା ସମାଦୃତ ହେଲେ ଶ୍ରମ ସଫଳ ମନେକରିବି । ଇତି ।

| କଟକ | ପ୍ରଣେତା |
| --- | --- |
| ଅଗଷ୍ଟ ୧୯୨୩ ମସିହା | ସାମନ୍ତ ଶ୍ରୀଗୋପୀନାଥ ମହାପାତ୍ର କାବ୍ୟତୀର୍ଥ |

# ଅଧ୍ୟାୟମାନଙ୍କର ସଂକ୍ଷିପ୍ତ ବିବରଣ ।

—o—

# ପ୍ରଶଂସା ପତ୍ର ।

କଟକ ରେଭେନ୍ସା ବାଳିକା କଲେଜର ସଂସ୍କୃତ ଅଧ୍ୟାପକ ପଣ୍ଡିତ ଶ୍ରୀ ଗୋପୀନାଥ ମହାପାତ୍ର କାବ୍ୟତୀର୍ଥଙ୍କଦ୍ୱାରା ସଂସ୍କୃତ ପଦ୍ୟାତ୍ମକ କପିଳସଂହିତାରୁ ସରଳ ଉତ୍କଳପଦ୍ୟରେ ଅନୂଦିତ ପୁସ୍ତକଟି ଆଦ୍ୟୋପାନ୍ତ ପାଠକରି ଯପୂରୋନାସ୍ତି ଆନନ୍ଦିତ ହେଲୁ । ଏଥିରେ ପଦବିନ୍ୟାସ ସୁସ୍ପଷ୍ଟ, ସୁଲଳିତ ଓ ପ୍ରସାଦଗୁଣବିଶିଷ୍ଟ ହୋଇଥିବାରୁ ସାଧାରଣବୋଧ୍ୟ ହୋଇଅଛି । ଉକ୍ତପୁସ୍ତକରେ ଶ୍ରୀପୁରୁଷୋତ୍ତମକ୍ଷେତ୍ର, ଭୁବନେଶ୍ୱର, କୋଣାର୍କ, ବିରଜାକ୍ଷେତ୍ର ଓ କପିଳାସପ୍ରଭୃତି ଉତ୍କଳୀୟ ଧର୍ମସ୍ଥାନମାନଙ୍କର ବିବରଣ ବିଶଦରୂପେ ବର୍ଣ୍ଣିତ ହୋଇଅଛି । ଏହା ପାଠକଲେ ଯେ କେବଳ ଉତ୍କଳସ୍ଥିତ ପୁଣ୍ୟକ୍ଷେତ୍ରମାନଙ୍କର ପବିତ୍ରତା ଓ ଐତିହାସିକତା ଜାଣିବାକୁ ହେବ ତାହା ନୁହେଁ । ଓଡ଼ିଶା ଯେ ଏକ ସମୟରେ ପୁଣ୍ୟଭୂମି ଥିଲା ଏ ବିଷୟ ମଧ୍ୟ ପୂର୍ଣ୍ଣ ମାତ୍ରାରେ ଏ ପୁସ୍ତକ ଜଣାଇ ଦେଉଅଛି । ଏପରି ଧର୍ମବିପ୍ଳବ ସମୟରେ ଏତାଦୃଶ ପୁସ୍ତକରଚନା ଏକାନ୍ତ ବାଞ୍ଛନୀୟ । କାରଣ ସାଧାରଣଙ୍କୁ ସଂସ୍କୃତରୂପ ନାରିକେଳଫଳର ରସ ପାନକରାଇବା ସହଜ ସାଧ୍ୟ ନୁହେ । ତେଣୁ ମାତୃଭାଷାସଙ୍କଳିତ ଧର୍ମପୁସ୍ତକମାନ ସେମାନଙ୍କର ଚିତ୍ତାକର୍ଷକ ହେବଏଥିରେ ମତଦ୍ୱୈଧ ଲକ୍ଷିତ ହେଉ ନାହିଁ । ଏତାଦୃଶ ଧର୍ମପୁସ୍ତକମାନଙ୍କର ପ୍ରକାଶଦ୍ୱାରା ହିନ୍ଦୁବଂଶରେ ଧର୍ମଭାବ ରହିଯିବ କଦାପି ଲୁପ୍ତହେବ ନାହିଁ । ଅତଏବ ରଚୟିତା ମହାଶୟଙ୍କୁ ଅନ୍ତରର ସହିତ ଧନ୍ୟବାଦ ପ୍ରଦାନ କରୁଅଛି ଏବଂ ଭଗବାନଙ୍କ ନିକଟରେ ଏକାନ୍ତ ପ୍ରାର୍ଥନା ଯେ ଏ ମହାଶୟ ଦୀର୍ଘାୟୁ ହୋଇ ନବ ଉତ୍ସାହରେ ଏତାଦୃଶ ଅପ୍ରକାଶିତ ଧର୍ମପୁସ୍ତକମାନ ପ୍ରକାଶକରି ଦେଶର ଗୌରବ ଓ ଧର୍ମଭାବ ବର୍ଦ୍ଧନକରନ୍ତୁ । ପୁସ୍ତକସ୍ଥ ବିଷୟମାନ ସହଜ ବୋଧ୍ୟ ହୋଇଥିବାରୁ ସେ ସମସ୍ତ ପ୍ରକାଶକରିବାକୁ ଅଗ୍ରସର

ହେଲୁ ନାହିଁ । ଏହି ଧର୍ମ୍ମପୁସ୍ତକ ସାଧାରଣରେ ପ୍ରଚଳିତ ହେବାର ଦେଖିଲେ ଅତ୍ୟନ୍ତ ଆନନ୍ଦିତ ହେବୁ । ଇତି ।

ଦୋଲମଣ୍ଡପ ସାହି,
ପୁରୀ ।
୨୭-୨-୨୩.

ମହାମହୋପାଧ୍ୟାୟ ପଣ୍ଡିତ
ଶ୍ରୀସଦାଶିବମିଶ୍ର ଶର୍ମ୍ମା
ବିହାର ଓଡ଼ିଶା ସଂସ୍କୃତ ସମିତିର, ପାଟନା
ଇଉନିଭରସିଟିର ସଦସ୍ୟ ଓ ମୁକ୍ତି ମଣ୍ଡପ ପଣ୍ଡିତ
ସଭାର ସମ୍ପାଦକ ।

# କପିଳସଂହିତା ।

## ପ୍ରଥମୋଽଧ୍ୟାୟଃ ।

### ମଙ୍ଗଳାଚରଣ ।

ଜଳଦଶ୍ୟାମଳ ଧନୁର୍ଗୁଣେରେ ଶୋଭିତ
ତ୍ରିଲୋକମଣ୍ଡପସ୍ତମ୍ଭ ପଦ ସୁଶୋଭିତ । ୧ ।
ତାପହର ବିଷ୍ଣୁଙ୍କର ଭୁଜଚତୁଷ୍ଟୟ
ତୁମ୍ଭର ଅଭୀଷ୍ଟସିଦ୍ଧି କରନ୍ତୁ ନିଶ୍ଚୟ । ୨ ।

ସତ୍ୟଙ୍କର୍ (୧) ରାଜୋବାଚ ।

ସୁବିଖ୍ୟାତ ପୁଣ୍ୟ ବନ୍ତ କ୍ଷେତ୍ରମାନଙ୍କର
ଶୁଣିଥିଲି ପୂର୍ବେ ମୁହିଁ ମହିମା ବିସ୍ତର । ୩ ।
ଏବେ ଶୁଣିବାକୁ ଇଚ୍ଛା ହେଉଛି ମୋହର
ପ୍ରଧାନ ସ୍ଥାନବିଷୟ ଉତ୍କଳଦେଶର । ୪।
ତପୋବନ ଦେବଦେବୀଆଦି ଯେ ସମସ୍ତେ
ଅଛନ୍ତି ଏଠାରେ ତାହା କହ ମୋ ଅଗ୍ରତେ । ୫ ।
ସକଳସୁରବନ୍ଦିତ ଅହେ ମୁନିବର !
କୃତାର୍ଥ ହୋଇବି ଯେବେ ଅନୁଗ୍ରହ କର । ୬ ।
ଅଷ୍ଟାଦଶ ପୁରାଣ (୨) ଅପର ଶାସ୍ତ୍ରମାନ
ସବଙ୍କହେତୁ ଜାଣିଛ ସକଳ ବିଧାନ । ୭ ।

---

(୧) ଚନ୍ଦ୍ରବଂଶମତେ ବୃହଦ୍ଧର୍ମ୍ମସ୍ୱଜାଙ୍କର ସୁତ ।

(୨) ବ୍ରହ୍ମ, ପଦ୍ମ, ବିଷ୍ଣୁ, ଶିବ, ଭାଗବତ, ନାରଦୀୟ, ମାର୍କଣ୍ଡେୟ, ଅଗ୍ନି, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ, ଲିଙ୍ଗ, ବରାହ, ସ୍କନ୍ଦ, ବାମନ, କୂର୍ମ, ମତ୍ସ୍ୟ, ଗରୁଡ଼, ବ୍ରହ୍ମାଣ୍ଡ ।

କପିଳ (୩) ଉବାଚ—

କହୁଛି ରହସ୍ୟ ନୃପ ଶୁଣ ଏକଚିତ୍ତେ
ଯାହାର ଶ୍ରବଣ ପାପ ନାଶଇ ତୁରିତେ । ୮ ।
ବର୍ଷମାନଙ୍କରେ ଯଥା ଭାରତ ଉତ୍ତମ
ସକଳଦେଶରେ ତଥା ଉତ୍କଳ ପାବନ । ୯ ।
ଏହାର ସମାନ ସ୍ଥାନ ନାହିଁ ମହୀତଳେ
କଥିତ ହୋଇଛି ଧର୍ମ୍ମଶାସ୍ତ୍ରମାନଙ୍କରେ । ୧୦ ।
ପୁଷ୍କରବନରେ (୪) ଥିଲେ ଯେତେ ମୁନିଗଣ
ଭରଦ୍ୱାଜସମୀପରେ ହୋଇ ସାବଧାନ । ୧୧ ।
ଯାହା ସବୁ ଶୁଣିଥିଲେ ତାହାଙ୍କୁ ପଚାରି
ସେ ସମସ୍ତ ଶୁଣ ରାଏ କହୁଛି ବିଚାରି । ୧୨

ଭରଦ୍ୱାଜ (୫) ଉବାଚ ।

ଏହି ପୁଣ୍ୟବନେ ବାସକରେ ଯେଉଁନର
ସଫଳ ହୁଅଇ ଜନ୍ମ ମହୀରେ ତାହାର । ୧୩ ।
ବାସକରନ୍ତି ଏଠାରେ ଯେତେ ପ୍ରାଣିଗଣ
ସେହିମାନଙ୍କର ହୁଏ ସଫଳ ଜୀବନ । ୧୪ ।
ଦ୍ୱିଜାତି (୬) ମାନଙ୍କୁ ଏଥି ଯେ ଦାନ ଦିଅନ୍ତି
ସେ ସମସ୍ତେ ଅନାୟାସେ ମୁକତି ଲଭନ୍ତି । ୧୫ ।
ହେବାରୁ ଅଳପ ପୁଣ୍ୟ ବିଶେଷ ଏଠାରେ
ବାସ କରନ୍ତି ଦେବତା ଏହି କାନନରେ । ୧୬ ।

---

(୩) କର୍ଦ୍ଦମ ପ୍ରଜାପତିଙ୍କର ପୁତ୍ର, ଦେବାହୂତି ଗର୍ଭସମ୍ଭୂତ, ଓ ସାଂଖ୍ୟଦର୍ଶନ ପ୍ରଣେତା ମୁନିବିଶେଷ ।

(୪) ବ୍ରହ୍ମାଙ୍କଦ୍ୱାରା ନିର୍ମିତ ତୀର୍ଥପ୍ରଦ ସ୍ଥାନ, ବର୍ତ୍ତମାନ୍ ଅଜମିର ନିକଟବର୍ତ୍ତୀ ପୋଖର ନାମରେ ପ୍ରସିଦ୍ଧ, ଓ ଏହା ସପ୍ତଦ୍ୱୀପର ଅନ୍ତର୍ଗତ । (୫) ଉତଥ୍ୟ ପତ୍ନୀ ମମତାଙ୍କ ଗର୍ଭରେ ଦେବଗୁରୁ ବୃହସ୍ପତିଙ୍କର ଔରସଜାତ ମୁନିବିଶେଷ ।

(୬) ବ୍ରାହ୍ମଣ ।

ବିନ୍ଦୁତୀର୍ଥ ବିରାଜନ୍ତି ଅଟେ ଏହୁ ସ୍ଥାନ
ସର୍ବଦା ଦେବଗଣରେ ହୁଏ ଶୋଭମାନ । ୧୭ ।
ବଟଅଶ୍ବତ୍ଥପୁନ୍ନାଗଆଦି ବୃକ୍ଷକୁଳ
ବହୁବିଧ ପକ୍ଷିରେ ବିଶେ ଅଛି ମନୋହର । ୧୮ ।
ଏହିଠାରେ ଅନୁଷ୍ଠାନ କରେ ଯେଉଁ ଜନ
ପୁନରପି ନୁହେ ତାର ମହୀରେ ଜନମ । ୧୯ ।
ଅକ୍ଷୟ ସୁକୃତ ହୁଏ ଏହି ଅରଣ୍ୟରେ
ଅଳପ ହୁଅନ୍ତି ମେରୁ (୨) ତୁଲ୍ୟ ସଞ୍ଚିତରେ । ୨୦ ।
ଯଦି କର ଅଭିଳାଷ ଅହେ ଋଷିମାନେ !
ପ୍ରଫୁଲ୍ଲଚିତ୍ତରେ ତପ କର ଏହି ସ୍ଥାନେ । ୨୧ ।
ଇତି ଶ୍ରୀକପିଳସଂହିତାୟାଂ ଋଷିପ୍ରଶ୍ନୋ ନାମ ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟୋଽଧ୍ୟାୟଃ ।

ଭରଦ୍ୱାଜ ଉବାଚ ।

ମନଦେଇ ଶୁଣ ସର୍ବେ ଉତ୍କଳ ଦେଶର
ସବିସ୍ତର ବିବରଣ ପାପତାପହର । ୧ ।
କରନ୍ତି ଦେବବୃନ୍ଦ ଏହାକୁ ନିର୍ମାଣ
ଅନ୍ୟ ଦେଶମାନ ଯାର ନୁହଇ ସମାନ । ୨ ।
ହରି ହର ସୂର୍ଯ୍ୟ ଦୁର୍ଗା ଯେଉଁ ପ୍ରଦେଶରେ
ସଦା ଅବସ୍ଥିତ, ତାହା ଖ୍ୟାତ ଭୂମଣ୍ଡଳେ । ୩ ।
ପୂର୍ବକାଳେ ତ୍ରେତାଯୁଗେ ସୁକାନ୍ତି (୧) ନାମରେ
ଦ୍ୱିଜବର ଥିଲେ ଏକ ଉତ୍କଳଦେଶରେ । ୪ ।

---

(୨) ହେମାଦ୍ରି ।

(୧) ସପ୍ତଋଷିଙ୍କମଧ୍ୟରେ ଏକତମ ଓ ପୁଲହଋଷିଙ୍କର ସୁତ ।

ମହେନ୍ଦ୍ରପର୍ବତେ ଥାଇ ସେହି ବ୍ରାହ୍ମଣ
ଦିନେ ପିତାଙ୍କୁ ଏକଥା ପୁଚ୍ଛିଲେ ବଦନ । ୫ ।

ସୁକାନ୍ତିରୁବାଚ ।

ଏହିସ୍ଥାନ ଜନାକୀର୍ଣ୍ଣ ହେଲା ବିଶେଷରେ
ତପସ୍ତରଣ କରିବି କହ କେଉଁ ସ୍ଥଳେ । ୬ ।

ପୁଲହ ଉବାଚ ।

ସର୍ବହିଂସାବିବର୍ଜ୍ଜିତ ସଦା ସୁଖାବହ
ସିଦ୍ଧଗନ୍ଧର୍ବସେବିତ ବନ୍ଧୁ ଅନୋବହ (୨) । ୭ ।
ତପସ୍ୟାର ଅଛିଏକ ସୁଖକର ସ୍ଥାନ
ବିନ୍ଧ୍ୟାଚଲ(୩) ନାମେ ଖ୍ୟାତ ଅଛି ଯାର ନାମ । ୮ ।
ସୁକାନ୍ତି ଶୁଣିଣ ତହୁଁ ପିତାଙ୍କ ବଚନ
ଉପସ୍ଥିତ ହେଲେ ଯାଇ ସେଠାରେ ତକ୍ଷଣ । ୯ ।
ଦେଖିଲେ ସେହି ପର୍ବତେ ନାହିଁ କିଛି ଜଳ
ସେଥିପାଇଁ ତପସ୍ୟାରେ ହେଲେ ଅଗ୍ରସର । ୧୦ ।
ଅହେ ଗଙ୍ଗାଦେବି ! ଯେବେ ହୋଇବ ସଦୟ
ଅନୁଷ୍ଠାନ ଆରମ୍ଭିବି ଏଠାରେ ନିଶ୍ଚୟ । ୧୧ ।
ତାଙ୍କ ମନ୍ତ୍ରବଳେ ଗଙ୍ଗା ହୋଇଣ ପ୍ରସନ୍ନ
ସ୍ୱର୍ଗୁ ଅବତୀର୍ଣ୍ଣ ହୋଇ କହିଲେ ବଚନ । ୧୨ ।

ଗଙ୍ଗୋବାଚ ।

ଅହେ ମହାଭାଗ ! ତୁମ୍ଭ ତପଃ ପ୍ରଭାବରେ
ଉପଗତ ହେଲି ଏହି ବିନ୍ଧ୍ୟଅଚଳରେ । ୧୩ ।
ଯେତେବେଳେ ହେବ ତୁମ୍ଭ ତପସ୍ୟାର ଫଳ
ସେ ପର୍ଯ୍ୟନ୍ତ ରହିବି ମୁଁ ଏଠାରେ ନିଶ୍ଚଳ । ୧୪ ।

---

( ୨ ) ବୃକ୍ଷବିଶେଷ ।
( ୩ ) ବହାର ପ୍ରଦେଶର ଦକ୍ଷିଣବର୍ତ୍ତୀ ପର୍ବତବିଶେଷ ।

ଦେବଗଣଙ୍କର ମୂର୍ଦ୍ଧେ ବିଶେଷ ଦୁର୍ଲଭା
ତୁମ୍ଭ ଅନୁଷ୍ଠାନ (୪) ବଳେ ଦେଖି ଏଥି ହେବା ।୧୫
ଗଙ୍ଗାଙ୍କବଚନ ଶୁଣି ପୁଲକ୍ଷନନ୍ଦନ
ବନୀତଭାବରେ ସ୍ତୁତି ଆରମ୍ଭିଲେ ପୁଣ । ୧୬ ।
ବ୍ରହ୍ମଲୋକରୁ ଯେ ତୁମ୍ଭେ ହୋଇଣ ସମ୍ଭୂତ
ଶଙ୍କରମସ୍ତକେ ଅସି ହୋଇଲ ପ୍ରାପତ । ୧୭ ।
ଏହିହେତୁ ସର୍ବଜୀବ ମଙ୍ଗଳକାରଣୀ
ହୋଇଣ ବୋଲୁଛ ସଦା ମହିମାଶାଳିନୀ । ୧୮ ।
ସକଳଦେବବନ୍ଦିତେ ! ଦୁରିତଧ୍ୱଂସିନି !
ପତିତପାବନି ! ସର୍ବକ୍ଲେଶସଂହାରିଣି ! । ୧୯ ।
ବିଷ୍ଣୁଙ୍କ ପାଦରୁ ତୁମ୍ଭେ ଲଭିଣ ଜନମ
ସଗରରାଜପୁତ୍ରଙ୍କୁ ( ୫ ) କରିଛ ପାବନ । ୨୦ ।
ଏହା କହିଣ ସୁକାନ୍ତ ପ୍ରଫୁଲ୍ଲଚିତ୍ତରେ
ସାଷ୍ଟାଙ୍ଗ ପ୍ରଣାମ କଲେ ତାହାଙ୍କ ପଦ୍ମରେ । ୨୧ ।
ଆଲିଙ୍ଗନ କରି ତାଙ୍କୁ ବସାଇଣ କୋଳେ
କହିଲେ ବଚନ ଦେବୀ ସୁମଧୁର ସ୍ୱରେ । ୨୨ ।
ଅଜଠାରୁ ବତ୍ସ ! ମୋର ହୋଇଲ ତନୟ
ତୁମ୍ଭେ ଯାହାଇଚ୍ଛା କର କହ ନିଃସଂଶୟ । ୨୩ ।

ସୁକାନ୍ତଉବାଚ ।

ପ୍ରସନ୍ନ ହୋଇଛ ଯେବେ ଦିଅ ମୋତେ ବର
ତୁମ୍ଭ ପ୍ରସାଦରେ ହେଉ ତପସ୍ୟାର ଫଳ । ୨୪ ।

---

( ୪ ) ଜପହୋମାଦି ।

( ୫ ) ପୂର୍ବକାଳରେ ସୂର୍ଯ୍ୟବଂଶୀୟ ଭଗୀରଥ ରାଜା ତପୋବଳରେ ସ୍ୱର୍ଗରୁ ଗଙ୍ଗାଙ୍କୁ ଅଣି, ସଗରରାଜପୁତ୍ରମାନଙ୍କୁ ଉଦ୍ଧାର କରିଥିଲେ ।

ଗଙ୍ଗୋବାଚ ।

ଯାହା ପ୍ରକାଶିଲ ତାହା ହୋଇବ ମୁକର ( ୬ )
ଅନନ୍ତର ସୁକାନ୍ତଙ୍କୁ କହିଲେ ଏ ଗିର । ୨୫ ।
ହୋଇନାହିଁ ମୋର ନାମ ଖ୍ୟାତ ଜଗତରେ
ମହାନଦୀନାମେ ମୁହିଁ ରହିବି ଉତ୍କଳେ । ୨୬ ।
ଯେତେକାଳ ଏ ଦେଶରେ ଥିବେ ଜୀବଗଣ
ସମସ୍ତେ କରିବେ ମୋର ମହିମା କୀର୍ତ୍ତନ । ୨୭ ।
ଏହା କହି ଗଙ୍ଗାଦେବୀ ସେହି ବ୍ରାହ୍ମଣଙ୍କୁ
ତହୁଁ ପ୍ରବାହିତ ହେଲେ ପୂର୍ବସାଗରକୁ ( ୭ ) । ୨୮ ।
ଉତ୍କଳ ପ୍ରଭୁଙ୍କୁ ପାଇ ଇନ୍ଦିରା ( ୮ ) ସୁନ୍ଦରୀ
ଯେପର୍ଯ୍ୟନ୍ତ ବିରାଜିତ ଥିବେ ଅନୁସରି । ୨୯ ।
ସେ ଅବଧି ରହିବି ମୁଁ ଏହି ପ୍ରଦେଶରେ
ବିଖ୍ୟାତ ହୋଇବ ଚତୁର୍ଦ୍ଦଶ ଭୁବନରେ ( ୯ ) । ୩୦ ।

ଇତିଶ୍ରୀକପିଳସଂହିତାୟାଂ ମହାନଦୀମାହାତ୍ମ୍ୟଂ ନାମ ଦ୍ୱିତୀୟୋଽଧ୍ୟାୟଃ ।



## ତୃତୀୟୋଽଧ୍ୟାୟଃ ।

ଋଷୟ ଊଚୁଃ ।

ହରି, ରବି, ହର, ଦୁର୍ଗା, ( ୧ ) ଏହିମାନଙ୍କର
ଯେଉଁତୀର୍ଥ ଅଛି କେଉଁ ସ୍ଥାନେ ମୁନିବର । ୧ ।

---

( ୬ ) ଦର୍ପଣ ।
( ୭ ) ଏହା ପୂର୍ବେ ସଗରରାଜପୁତ୍ରମାନଙ୍କଦ୍ୱାରା ନିର୍ମିତହୋଇଥିଲା ।
( ୮ ) ଲକ୍ଷ୍ମୀଦେବୀ ।
( ୯ ) ସପ୍ତପାତାଳ ଓ ସପ୍ତସ୍ୱର୍ଗର ସମଷ୍ଟିକୁ ଚତୁର୍ଦ୍ଦଶଭୁବନ ବୋଲଯାଏ ।
( ୧ ) ପୁରୁଷୋତ୍ତମ, କୋଣାର୍କ, ଭୁବନେଶ୍ୱର ଓ ବିରଜାକ୍ଷେତ୍ର ।

## ଭରଦ୍ୱାଜ ଉବାଚ ।

ଶ୍ରୀହରିମାହାତ୍ମ୍ୟ ପୁଣ୍ୟଧାମ ଏମାନଙ୍କୁ
ସଂକ୍ଷେପିଣ କହୁଅଛୁ ବୁଝାଇ ତୁମ୍ଭଙ୍କୁ । ୨ ।
ଦାରୁବ୍ରହ୍ମରୂପୀ ବିଷ୍ଣୁଙ୍କର ନୀଳାଚଳ
ଯେଉଁ ପ୍ରଦେଶରେ ବିରାଜିତ ନିରନ୍ତର । ୩ ।
ସେହି ସ୍ଥାନେ ଦେହତ୍ୟାଗ କରେ ଯେଉଁ ଜନ
ତାହାକୁ ପ୍ରାପତ ହୁଏ ବୈକୁଣ୍ଠଭୁବନ । ୪ ।
ଜଳଦସୁନ୍ଦର ସେହି ପୂତ ଅଚଳର
ପରିମାଣ କହୁଅଛୁ ଶୁଣ ହୋଇ ସ୍ଥିର । ୫ ।
ଦଶଯୋଜନ (୧) ପର୍ଯ୍ୟନ୍ତ ପର୍ବତ ବିସ୍ତାର
ଅଟଇ ଅର୍ଦ୍ଧଯୋଜନ ଉଚ୍ଚତା ଯାହାର । ୬ ।
ବହୁମୁନିଗଣାକୀର୍ଣ୍ଣ ବିହଙ୍ଗନାଦିତ
ସଫଳବୃକ୍ଷରେ ସଦା ଦିଶେ ସୁମଣ୍ଡିତ । ୭ ।
ସ୍ୱରଗର ସମକକ୍ଷ ଅଟେ ସେହି ସ୍ଥାନ
ଶ୍ରୀପୁରୁଷୋତ୍ତମ ଯାର ହୋଇଅଛି ନାମ । ୮ ।
ଈଶ୍ୱର ଭକ୍ତି ସମାଧି ଆଦି କର୍ମମାନ
ଲବ୍ଧ ହୁଅଇ ସେଠାରେ ଆହେ ଋଷିଗଣ ! । ୯ ।
ବ୍ରହ୍ମାଦି ସକଳଦେବ ତହିଁ ବାସ କରି
ସ୍ନାନ ସାରିଣ ସାଗରେ ଦେଖନ୍ତି ଶ୍ରୀହରି । ୧୦ ।
ନୀଳାଶ୍ମରୂପକୁ ଧରି ଶ୍ରୀନୀଳମାଧବ
ଖ୍ୟାତ ହୋଇଥିଲେ ପୂର୍ବକାଳେ ଯେ କେଶବ । ୧୧ ।
ଏବେ ସେହି ପ୍ରଭୁ ନିଜେ ଦାରୁରୂପ ଧରି
ଜଗନ୍ନାଥନାମେ ଖ୍ୟାତ ହୋଇଛନ୍ତି ହରି । ୧୨ ।

(୧) ଚାରିକୋଶରେ ଏକ ଯୋଜନ ହୁଏ ।

## ଦ୍ୱିତୀୟୋଽଧ୍ୟାୟଃ ।

ଋଷୟ ଊଚୁଃ ।

ଅହେ ମୁନିବର ! ଏବେ ସେହୁ ଜଗପତି
କପରି ହୋଇ ଅଛନ୍ତି ବିବିଧ ମୂରତି ।୧୩।

ଭରଦ୍ୱାଜ ଉବାଚ—

ପୂର୍ବକାଳେ ଇନ୍ଦ୍ରଦ୍ୟୁମ୍ନନାମେ (୩) ମହୀପତି
ସର୍ବଦା ବିଷ୍ଣୁଙ୍କଠାରେ କଲେ ଦୃଢ଼ଭକ୍ତି ।୧୪।
ଯେତେବେଳେ ବିବାହିତ ହୋଇ ବିଶମ୍ଭର
ପଞ୍ଚମଶିର ଛେଦିଲେ କ୍ରୋଧେ ଧାତାଙ୍କର ।୧୫।
ବ୍ରହ୍ମା ହେଲେ ଚତୁର୍ମୁଖ ସେହିଦିନଠାରୁ
ଇନ୍ଦ୍ରଦ୍ୟୁମ୍ନ ସୃଷ୍ଟି ସେହି ଛିନ୍ନ ମସ୍ତକରୁ ।୧୬।
ତପସ୍ୱୀ ପ୍ରଶାନ୍ତ ସଦା ଅତିଥି ପୂଜକ
ଜିତେନ୍ଦ୍ରିୟ ଦୟାଶୀଳ ସତ୍ୟସମ୍ଭାଷକ ।୧୭।
ନିରନ୍ତର ମହୀପତି ଏହା ଚିନ୍ତା କଲେ
ନାରାୟଣଙ୍କୁ ଦେଖିବି ନିଜଲୋଚନରେ ।୧୮।
ନୃପତିଙ୍କୁ ତଦାସକ୍ତ ଦେଖି ଜନାର୍ଦ୍ଦନ
ସ୍ୱପ୍ନରେ ଦର୍ଶନ ଦେଇ କହିଲେ ବଚନ ।୧୯।

ଶ୍ରୀ ଭଗବାନୁବାଚ । (୪)

ଇନ୍ଦ୍ରଦ୍ୟୁମ୍ନ ! ନୃପମଣି ଶୁଣ ମୋ ଆଦେଶ
ଯାହା ଜାଣି ନପାଇବ ମାନସିକ କ୍ଳେଶ ।୨୦।
ଲବଣସାଗରତୀରେ ବାଲୁକାସଂବୃତ
ନୀଳାଚଳ ସ୍ଥାନ ଅଛି ଜଗତବିସ୍ତୃତ ।୨୧।

---

(୩) ସୂର୍ଯ୍ୟବଂଶୀୟ ଇନ୍ଦ୍ରଦ୍ୟୁମ୍ନରାଜା ସତ୍ୟଯୁଗରେ ରାଜତ୍ୱ କରୁଥିଲେ, ଅବନ୍ତୀ ତାହାଙ୍କର ରାଜଧାନୀ ଥିଲା ଏବଂ ସେ ପ୍ରଧାନ ବିଷ୍ଣୁଭକ୍ତ ଥିଲେ ।

(୪) ଐଶ୍ୱର୍ଯ୍ୟ, ପରାକ୍ରମ, ଯଶ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟକୁ ଭଗ ବୋଲାଯାଏ ।

ପ୍ରଳୟକାଳରେ ସବୁ ସ୍ଥାବର ଜଙ୍ଗମ
ଅଦୃଶ୍ୟ ହୋଇଣ ଜଳେ ହୁଅଇ ମଗନ । ୨୨ ।
ତହୁଁ ଅନନ୍ତସର୍ପରେ କରଇ ଶୟନ
ଶ୍ରୀପୁରୁଷୋତ୍ତମକ୍ଷେତ୍ରେ ହୁଏ ଭାସମାନ । ୨୩ ।
ଜପତପବ୍ରତ ଅନୁଷ୍ଠାନବଳେ ଭୂପ !
ଦେଖିବ ସେଠାରେ ମୋର ସ୍ୱକୀୟ ସ୍ୱରୂପ । ୨୪ ।
ପରମପାବନ ତୀର୍ଥ ଅଛି ସେ ସ୍ଥାନରେ
ରୋହିଣୀନାମରେ (୫) ଖ୍ୟାତ ଜଗତ ମଧ୍ୟରେ । ୨୫ ।
ଯେ ଜନ ଭକ୍ତିରେ ତହିଁ ସ୍ନାହାନ କରଇ
ମୋର ଦେହରେ ସେ ଯାଇ ବିଲୀନ ହୁଅଇ । ୨୬ ।
କହୁ କହୁ ଏ ସକଳ ଶ୍ରୀମଧୁସୂଦନ
ଇନ୍ଦ୍ରଦ୍ୟୁମ୍ନ ନୃପଙ୍କର ଭାଙ୍ଗିଲା ସ୍ୱପନ । ୨୭ ।
ଶୟନରୁ ଉଠି ତାଙ୍କୁ ନଦେଖି ରାଜନ ।
ଆହା କୃଷ୍ଣ ବୋଲି ଉଚ୍ଚୈଃ କଲେକ ରୋଦନ । ୨୮ ।
ପୂର୍ବେ କରିଥିଲି ବେଦ ଦ୍ୱିଜ (୬) ଅପମାନ
ସେହୁ ହେତୁ ଦୟା ହରି ହେଲେ ଅନ୍ତର୍ଦ୍ଧାନ । ୨୯ ।
ଦୁଃଖିତ ପ୍ରଜାମାନଙ୍କୁ ଉତ୍ତମ ରୂପରେ
ପାଳନ ନକଲି ମୁହିଁ ଏହି ଭୁବନରେ । ୩୦ ।
ମୋହର ଏ ଦୋଷ ଦେଖି ଅଥବା ଈଶ୍ୱର
କେଉଁଅଡ଼େ ଅନ୍ତର୍ହିତ ହୋଇଲେ ସତ୍ୱର । ୩୧ ।
ଏହିରୂପ ରାଜାଙ୍କର ବିଳାପକାଳରେ
ମନ୍ତ୍ରୀ ପୁରୋହିତ ଆସି ମିଳିଲେ ପାର୍ଶ୍ୱରେ । ୩୨ ।

---

(୫) ଶ୍ରୀଜଗନ୍ନାଥ ମନ୍ଦିରାଭ୍ୟନ୍ତରେ ରୋହିଣୀକୁଣ୍ଡର ଜଳ ପରମପବିତ୍ର ଓ ମୁକ୍ତିପ୍ରଦ ।

(୬) ବ୍ରାହ୍ମଣ, କ୍ଷତ୍ର ଓ ବୈଶ୍ୟ ଏମାନଙ୍କୁ ଦ୍ୱିଜ ବୋଲାଯାଏ ।

ମନ୍ତ୍ରିଣଊଚୁଃ ।

କାହିଁକ ନୃପତି ! ତୁମ୍ଭେ କରୁଛ ଖେଦନ
ପ୍ରତି ବିଧାନ କରବୁ ତାହାର ବହନ । ୩୩ ।
ଏହା ଶୁଣି ପ୍ରସନ୍ନମନ ହୋଇ ନରବର
ସର୍ବସମକ୍ଷରେ ଏହା କହିଲେ ଅଧୀର (୭) । ୩୪ ।

ଇନ୍ଦ୍ରଦ୍ୟୁମ୍ନ ଉବାଚ ।

ସକଳସୁରବନ୍ଦିତ ସେହି ଜନାର୍ଦ୍ଦନ
ସ୍ୱପ୍ନେ ଯାହା କହିଛନ୍ତି ଶୁଣ ମନ୍ତ୍ରିଗଣ ! । ୩୫ ।
ତପୋବଳେ ମହୀପତି ଯାଇ ସେହିସ୍ଥାନେ
ଦେଖିବ ମୋର ଆକାର ସ୍ୱକୀୟଲୋଚନେ । ୩୬ ।
ଏବେ ମୋତେ ଘେନି ଯାଅ ସେହି ପର୍ବତକୁ
ସୁଜନ୍ୟ ସୈନିକଦଳ ଆଣ ମୋ ପାଖକୁ । ୩୭ ।
ଏହାଶୁଣି ସଚିବାଦି ସର୍ବପରିଜନ
ତଥାସ୍ତୁ ବୋଲିଣ ଗଲେ ଯେ ଯାହା ଭବନ । ୩୮ ।
ସ୍ୱପଦବୀ ସ୍ଥିର ରଖିବାକୁ ଦଣ୍ଡଧର
ନୀଳାଚଳେ ମାଧବଙ୍କୁ (୮) କହିଲେ ଏଗିର । ୩୯ ।

ଯମଉବାଚ ।

ସର୍ବଜୀବ ହିତକାରୀ ଅହେ ପିତାମ୍ବର
ନମସ୍କାର କରୁଅଛୁ ମୁଁ ତବ କଙ୍କର । ୪୦ ।
କରଅଛ ମହେ ସଜା ପ୍ରେତମାନଙ୍କରେ (୯)
ଏବେ ମୁହିଁ କଵଉବି ଏହି ଜଗତରେ । ୪୧ ।

---

(୭) ଚଞ୍ଚଳମନା ।

(୮) ଶ୍ରୀ ଜଗନ୍ନାଥଦେବଙ୍କ ନିର୍ମାଣପୂର୍ବରୁ ନୀଳାଚଳରେ ନୀଳମାଧବମୂର୍ତ୍ତି ପ୍ରତିଷ୍ଠିତ ଥିଲେ ।

(୯) ଯେଉଁ ଲୋକମାନଙ୍କର ଦେହ ଭସ୍ମୀଭୂତ, ସେମାନଙ୍କର ଆତ୍ମାକୁ ପ୍ରେତ ଓ ମୃତ ବୋଲଯାଏ ।

ଶ୍ରୀଭଗବାନୁବାଚ ।

ନ ଥାପବ ଉପସ୍ଥିତ ହୋଇଛ ଶୁମ୍ବର
କହ ମୋତିକଟେ ତାହା ଖଣ୍ଡିବି ସତ୍ବର । ୪୨ ।

ଯମଉବାଚ ।

ପୂର୍ବେ ଯାହା ସତ୍ୟ କରଅଛ ନାରାୟଣ
କର ଏବେ ସେହି କଥାମାନଙ୍କୁ ପାଳନ । ୪୩ ।
ଇନ୍ଦ୍ରଦ୍ୟୁମ୍ନ ସଙ୍ଗେ ଯେତି ସକଳ ଲୋକଙ୍କୁ
ଅଣ୍ଠଅଛନ୍ତି ମୋପଛେ ଶୁମ୍ବର ପାଶକୁ । ୪୪ ।
ସେହି ମାନଙ୍କର ଯେବେ ହୋଇବ ମୁକତ
ତେବେ ମୁହିଁ ନ ନରବି ହିହ ସହୁଘାତ । ୪୫ ।
ସ୍ଵକୀୟ ରୂପକୁ ଦେବ ! ପରତ୍ୟାଗ କରି
ରୋହଣୀ ଗମନକରୁ ପାତାଳ (୧୦) ନଗରୁ । ୪୬ ।
ହାର ଲଭଛ ମୁକତ ଯହିଁକର ସ୍ନାନ
ଯାହା ଦେଖି ବ୍ୟାଧ ହେଲା ଅମରସମାନ । ୪୭ ।

ଶ୍ରୀଭଗବାନୁବାଚ ।

ପୂର୍ବେ ଯାହା କହଅଛ ତାହାକୁ ସୁମର
ପ୍ରାର୍ଥିତ ସମସ୍ତ ଏବେ ହୋଇବ ମୁକର । ୪୮ ।
ଆଜ୍ଞା ପାଇଣ ଅନନ୍ଦେ ସୂର୍ଯ୍ୟନନ୍ଦନ (୧୧)
ଉପସ୍ଥିତ ହେଲେ ଯାଇ ସ୍ଵକୀୟ ଭବନ । ୪୯ ।

ଇତିଶ୍ରୀ କପିଳସଂହିତାୟାଂ ଯମବରପ୍ରଦାନଂ ନାମ ତୃତୀୟୋଽଧ୍ୟାୟଃ ।



(୧୦) ତଳ, ଅତଳ, ବିତଳ, ସୁତଳ, ତଳାତଳ, ମହାତଳ ସୁତଳ ଏହାସପ୍ତ ପାତାଳ ନାମରେ ଅବହିତ ।

(୧୧) ଚନ୍ଦ୍ରଧର ।

# ଚତୁର୍ଥୋଽଧ୍ୟାୟଃ ।

ଭରଦ୍ୱାଜଉବାଚ ।

ମନ୍ତ୍ରୀ ପୁରୋହିତଆଦି ସର୍ବପରିଜନ
ଘେନିଣ ନରେଶ ତହୁଁ କଲେକ ଗମନ । ୧ ।
ଏକାମ୍ରବନରେ ଦେଖି ଶିବଙ୍କୁ ଭକ୍ତିରେ
ଅର୍ଚ୍ଚିଣ ବିଶ୍ରାମ ନେଲେ ସକଳେ ସେଠାରେ । ୨ ।
ତହିଁ ନାରଦଙ୍କୁ(୧) ନୃପ ଦେଖି ହୃଷ୍ଟମନ
ଯଥା ବିଧିରେ ତାହାଙ୍କୁ କହିଲେ ବଚନ । ୩ ।
ଦକ୍ଷିଣଚକ୍ଷୁ ସ୍ଫୁରିତ ହେଉଛି ମୋହର
ବାମଅଙ୍ଗ ପ୍ରକମ୍ପିତ ହୁଏ ନିରନ୍ତର । ୪ ।
ଏହାର କାରଣ ମୋତେ କହ ମୁନୀଶ୍ୱର
ତୁମ୍ଭ ଅନୁଗ୍ରହେ ହେଉ ଅଭୀଷ୍ଟ ସଫଳ । ୫ ।

ନାରଦଉବାଚ ।

ସେହିଣୀ କନ୍ଦର ତୁହେଁ ଗମନ ପ୍ରାର୍ଥନ
ଶୁଣିଣ ସତ୍ୱର ଗଲେ ପାତାଳ ଭୁବନ । ୬ ।
ବଜ୍ରପାତସମ ବାକ୍ୟ ମହାମୁନିଙ୍କର
ଅବଗତ ହୋଇ ରାଜା ମୂର୍ଚ୍ଛିତ ଅସ୍ଥିର । ୭ ।
ତାଙ୍କୁ ଭୂମିଗତ ସବେ ଦେଖି ଶୀଘ୍ରକାଳେ
ମନ୍ତ୍ରୀଆଦି ସ୍ୱହସ୍ତରେ ଉତ୍ତୋଳନ କଲେ । ୮ ।
ଏରୂପ ଅବସ୍ଥା ଦେଖି ଅତ୍ୟନ୍ତ ଦୁଃଖିତ
ନାରଦ ତାହାଙ୍କୁ ପ୍ରବୋଧିଲେ ଏହିମତ । ୯ ।
ଯଠାଇ ଅଛନ୍ତି ମୋତେ ଜଗତଜୀବନ
ତୁମ୍ଭ କାର୍ଯ୍ୟ କରିବାକୁ ଜାଣ ଇନ୍ଦ୍ରଦ୍ୟୁମ୍ନ ।। ୧୦ ।

(୧) ଦେବର୍ଷି, ବ୍ରହ୍ମାଙ୍କର ମାନସପୁତ୍ର ଓ ସଙ୍ଗୀତବେତ୍ତା ।

ଏବେ ସେହି ବିଶ୍ୱାଧାର ( ୧ ) ବିପଦଭଞ୍ଜନ
ପ୍ରକାଶିତ ହେବେ ନୀଳାଚଳରେ ବହନ । ୧୧ ।
ଦାରୁମାନେ ଶଙ୍ଖଚକ୍ରେ ହୋଇଣ ଅଙ୍କିତ
ଭାସୁ ଅଛନ୍ତି ସାଗରେ ଅତ୍ୟନ୍ତ ଶୋଭିତ । ୧୨ ।
ଏହାଶୁଣି ଗୃହିହସ୍ତ ଧରଣ ଭୂପତି
ଆନନ୍ଦମନରେ ତହିଁ ମିଳିଲେ ତୁରିତ । ୧୩ ।
ତାହାଙ୍କ ଆଦେଶ ପାଇ ପାରିଷଦମାନେ
ଦାରୁମାନ ଉତ୍ତୋଳନ କଲେ ସେହି କ୍ଷଣେ । ୧୪ ।
ବିଶ୍ୱକର୍ମା ( ୨ ) ଦୈବବଳେ ଆସି ସେହିଠାରେ
ତିନିମୂର୍ତ୍ତିର ନିର୍ମାଣ ପ୍ରଥମେ କହିଲେ । ୧୫ ।
ଶଙ୍ଖଚକ୍ର ଚତୁର୍ହସ୍ତ ଜଗନ୍ନାଥଙ୍କର
ହଳ ମୁଷଳ ଆୟୁଧ ବଳଦେବଙ୍କର । ୧୬ ।
ସୁଭଦ୍ରା ସର୍ବଶୁଭଦା ଗଠିତ ହୋଇଲେ
ସ୍ତମ୍ଭରୂପେ ସୁଦର୍ଶନ ତହିଁ ପ୍ରକାଶିଲେ । ୧୭ ।
ଏହାଙ୍କୁ କରଣ ଶୁଭ ମଣ୍ଡପେ ସ୍ଥାପନ
ଗମନ କଲେ ନୃପତି ବ୍ରହ୍ମାଙ୍କସଦନ (୩) । ୧୮ ।

ରାଜୋବାଚ ।

ପ୍ରଭୁ ପ୍ରଜାପତି ! ତୁମ୍ଭେ ହୋଇଣ ପ୍ରସନ୍ନ
ଅଭୀଷ୍ଟ ପୂରଣ କର ମୋହର ବଚନ । ୧୯ ।

ବ୍ରହ୍ମୋବାଚ ।

ଅହେ ମହାଭାଗ ! ତୁମ୍ଭ ସଦୃଶ ଭକତ
ଜାତ ହୋଇନାହିଁ ମହୀମଣ୍ଡଳେ ସୁବ୍ରତ । ୨୦ ।

---

( ୧ ) ଜଗତର ଆଶ୍ରୟ ।
( ୨ ) ବ୍ରହ୍ମାଙ୍କର ପୁତ୍ର ଓ ଦେବଶିଳ୍ପୀ ।
[ ୩ ] ବ୍ରହ୍ମଲୋକ ।

ଏବେ ତୁମ୍ଭ ଅନୁରୋଧେ ଯାଇ ମୁଁ ସେ ସ୍ଥାନ
ପ୍ରତିଷ୍ଠା କାର୍ଯ୍ୟ କରିବ ନିଶ୍ଚେ ସମ୍ପାଦନ । ୧୧ ।

ଭରଦ୍ୱାଜ ଉବାଚ ।

ଧାତାଙ୍କର ବାକ୍ୟ ଶୁଣି ନୃପ ହୃଷ୍ଟମନ
ଅଚିରେ ନିଜ ଆବାସେ ମିଳିଲେ ତକ୍ଷଣ । ୧୨ ।
ପ୍ରତିଷ୍ଠା କାର୍ଯ୍ୟକୁ ବ୍ରହ୍ମା କଲେ ସମ୍ପାଦନ
ତେତିଶକୋଟୀ ଦେବତା କଲେକ ସ୍ତବନ । ୧୩ ।
ଶଙ୍ଖଚକ୍ରଧାରୀ ଦେବ ହୋଇ ଆବିର୍ଭୂତ
ଇନ୍ଦ୍ରଦ୍ୟୁମ୍ନ ନୃପତିଙ୍କୁ କହିଲେ ଭାଷିତ । ୧୪ ।

ଶ୍ରୀଭଗବାନୁବାଚ ।

ପୁଣ୍ୟକ୍ଷେତ୍ର ବହୁତୀର୍ଥ ସ୍ଥିତ ଏଠାରେ
ପରାର୍ଦ୍ଧପର୍ଯ୍ୟନ୍ତ (୪) ମୁହିଁ ରହିବ ଉତ୍କଳେ । ୧୫ ।
ଶ୍ରୀଗୁଣ୍ଡିଚ (୫) ଦୋଳ ସ୍ନାନ ଆଦି ଯାତ୍ରାମାନ
ପ୍ରତିସମୟରେ ନୃପ ! କରିବ ବିଧାନ । ୧୬ ।
ଏହା କହିଣ ନିବୃତ୍ତ ହେଲେ ଜନାର୍ଦ୍ଦନ
ତହୁଁ ପ୍ରଜାପତି ଗଲେ ସ୍ୱକୀୟ ସଦନ । ୧୭ ।
ନୃପତି ଅର୍ଚ୍ଚନା କରି ତାଙ୍କୁ ଆନନ୍ଦରେ
ସାଯୁଜ୍ୟ (୬) ମୁକ୍ତି ଲଭିଲେ ଅନ୍ତିମକାଳରେ । ୧୮ ।

ଇତି ଶ୍ରୀକପିଳସଂହିତାୟାଂ ଇନ୍ଦ୍ରଦ୍ୟୁମ୍ନନୃପମୋକ୍ଷପ୍ରାପ୍ତି ର୍ନାମ ଚତୁର୍ଥୋଽଧ୍ୟାୟଃ ।



[ ୪ ] ପରାର୍ଦ୍ଧର ସଂଖ୍ୟା ହେଉଛି ୧,୦୦,୦୦,୦୦,୦୦,୦୦,୦୦,୦୦,୦୦୦ ।

[ ୫ ] ଏହି ମନ୍ଦିର ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ମହିଷୀ ଗୁଣ୍ଡିଚାଦେବୀଙ୍କଦ୍ୱାରା ସ୍ଥାପିତ ହୋଇ ଥିଲା ।

[ ୬ ] ମୁକ୍ତି ତ୍ରିବିଧ—ସାଯୁଜ୍ୟ, ସାଲୋକ୍ୟ ଓ ସାମୀପ୍ୟ ।

## ତ୍ରୟୋଦଶୋଽଧ୍ୟାୟଃ ।

ଭରଦ୍ୱାଜ ଉବାଚ ।

ସେହି କ୍ଷେତ୍ରେ ସଦା ବାସ କରେ ଯେଉଁ ନର
ମୁକତ ଲଭିଣ ଯାଏ ବିଷ୍ଣୁଙ୍କ ନଗର । ୧ ।
ଯାଗରେ କରଣ ସ୍ନାନ ଯେଉଁ ଭକ୍ତମାନେ
ଜଗନ୍ନାଥଙ୍କୁ ଦେଖନ୍ତି ରତ୍ନସିଂହାସନେ । ୨ ।
ସେମାନଙ୍କ ବ୍ରହ୍ମହତ୍ୟା ଆଦି ପାପମାନ
ଅଗ୍ନିରେ ପତଙ୍ଗପରି ହୁଅଇ ବିଲୀନ । ୩ ।
ସରସ୍ୱତୀ ଗୋଦାବରୀ ଗଙ୍ଗାଦି ସରିତ
ଏଥି ସ୍ନାନକଲେ ହୁଏ ଫଳ ଅଗଣିତ । ୪ ।
ଲବଣସାଗର ମଧ୍ୟେ ଅବଗାହି ନର
ସେହି ଫଳକୁ ପ୍ରାପତ ଏଠାରେ କେବଳ । ୫ ।
ମାର୍କଣ୍ଡେୟ ନାମେ ( ୧ ) ତୀର୍ଥ ଅଛି ସେସ୍ଥାନରେ
ସ୍ନାନମାନେ ଯହିଁ ନର ମୁକ୍ତ ସତ୍ୱରରେ । ୬ ।
ଶ୍ରୀହରିନିର୍ମିତ ସେହି ପବିତ୍ର ପଦ୍ମରେ
ଅବଗାହି ଦେଖେ ଯେହୁ ଶିବଙ୍କୁ ସେ ସ୍ଥଳେ । ୭ ।
କୋଟିଜନ୍ମାର୍ଜିତ ପାପ କରିଣ ଦହନ
ଅନ୍ତକାଳେ ଲଭେ ସେହୁ ବୈକୁଣ୍ଠ ଭୁବନ । ୮ ।
ଦେବରାଜଙ୍କ ଦକ୍ଷିଣେ ଯମେଶ୍ୱରନାମେ
ଅଛନ୍ତି ଚନ୍ଦ୍ରଶେଖର ଏକ ସେହିସ୍ଥାନେ । ୯ ।
ଭକ୍ତିରେ ପୂଜା କରଇ ତାହାଙ୍କୁ ଯେ ଜନ
ଯମଦଣ୍ଡବର୍ଜିତ ହୁଏ ଋଷିଗଣ ! (୨) । ୧୦ ।

---

[ ୧ ] ସପ୍ତକଳ୍ପାନ୍ତଜୀବୀ ମୁନିବିଶେଷ ।
[ ୨ ] ନୈମିଷାରଣ୍ୟନିବାସୀ ପୁରୁଷମାନେ ଋଷିପଦବାଚ୍ୟ ।

ମନୋରଥସିଦ୍ଧି ଧନଲାଭ ଆଦି ଫଳ
ପ୍ରାପ୍ତ ହେମାନବ ଅଳ୍ପଦିନରେ କେବଳ । ୧୧ ।
କପାଳମୋଚନ ଶିବ ( ୩ ) ଯେକରେ ଦର୍ଶନ
ବ୍ରହ୍ମହତ୍ୟା ପାପ ତାର ହୁଅଇ ମୋଚନ । ୧୨ ।
ଶ୍ୱେତଗଙ୍ଗା ନାମେ ଅଛୁ ଯେଉଁ ସରୋବର
ଶ୍ୱେତମାଧବ ଅଛନ୍ତି ତହିଁ ମନୋହର । ୧୩ ।
ମତ୍ସ୍ୟମାଧବ ରାଜିତ ତାହାଙ୍କ ଅଗ୍ରରେ
କୀଟ ହେଲେ ମୁକ୍ତ ହୁଏ ନିଶ୍ଚୟ ସେ ସ୍ଥଳେ । ୧୪ ।
ଇନ୍ଦ୍ରଦ୍ୟୁମ୍ନ ସରୋବରେ କରଇ ଯେ ସ୍ନାନ
ଲଭଇ ସେହୁ ଅପାର ସଂସାରୁ ନିର୍ବାଣ ( ୪ ) । ୧୫ ।
ଦାରୁବ୍ରହ୍ମଙ୍କ ଦକ୍ଷିଣେ ଅଛୁ ଯେଉଁ ବଟ
ତାହା ଛାୟା ଆଶ୍ରୟରେ ନାହଇ ସଂକଟ । ୧୬ ।
ପ୍ରଦକ୍ଷିଣ କରେ ତାର ମୂଳରେ ଯେ ନିତ
ସକଳ ପାପ ନାଶିଣ ପାଏ ସଦଗତି । ୧୭ ।
ତାହା ମୂଳେ ମଙ୍ଗଳାଙ୍କୁ ଯେ କରେ ଦର୍ଶନ
ଅମଙ୍ଗଳ ନ ଘଟଇ ତାର କଦାଚନ । ୧୮ ।
ବିମଳାଦେବୀଙ୍କୁ ସଦା ଦେଖେ ଯେଉଁ ନର
ରୋହଣୀକୁଣ୍ଡନିକଟେ ଯାହାଙ୍କ ମନ୍ଦିର । ୧୯ ।
ପାଇଣ ବିମଳ ମତି ହୁଏ ସିଦ୍ଧ ଜନ
ପ୍ରଫୁଲ୍ଲଚିତ୍ତରେ ଏହା ଶୁଣ ମୁନିଗଣ ! ।୨୦ ।
ତାହାଙ୍କ ନିକଟେ ଛନ୍ତି ନୃସିଂହ ମୂରତି(୫)
ଯାହାଙ୍କୁ ଦେଖିଲେ କେବେ ନଘଟେ ଦୁର୍ଗତି । ୨୧ ।

[ ୩ ] ଏହି ସ୍ଥାନରେ ବ୍ରହ୍ମାଙ୍କର ପଞ୍ଚମ ମସ୍ତକ ଛିନ୍ନ ହୋଇ ମୁକ୍ତ ହୋଇଥିଲା ।
[ ୪ ] ମୋକ୍ଷ ।
(୫) ନୃସିଂହଙ୍କର ଅବତାରବିଶେଷ ।

ବନମାଳା ବିଭୂଷିତ ଦେବ ଦାମୋଦର
ବିରାଜିତ ହୋ ଛନ୍ତି ତାହାଙ୍କ ଅଗ୍ରର । ୨୨ ।
ଯାହାଙ୍କର ଭକ୍ତ ଶଙ୍ଖଚକ୍ରରେ ଲକ୍ଷିତ
ଅନନ୍ତ ସପଣଚୂଳୋ ପୃଷ୍ଠରେ ବନ୍ଦିତ । ୨୩ ।
ଲକ୍ଷ୍ମୀଦେବୀ ପାଦତଳେ ଛନ୍ତି ଯାହାଙ୍କର
ପାର୍ଶ୍ଵଦେଶେ ସରସ୍ଵତୀ (୭) ଥିଲେ ନିରନ୍ତର । ୨୪ ।
ଅଭିନମୂର୍ତ୍ତି ହୋଇ ଦେବ ଭଗବାନ
ଏକରୂପ ହୋଇ ଯହିଁ କଲେ ଅଧିଷ୍ଠାନ । ୨୫ ।
ବାରାଣସୀ ସମ ଅଛି ଏକାମ୍ର କାନନ
ଶ୍ରୀପୁରୁଷୋତ୍ତମ ଯାର ହୁଏ ଅନୁପମ । ୨୬ ।
ବ୍ରାହ୍ମଣ କ୍ଷତ୍ରିୟ ଶୂଦ୍ର ବୈଶ୍ୟ ଆଦି ଜନ
ଜାତିଭେଦ ଛାଡ଼ି ଯହିଁ କରନ୍ତି ଭୋଜନ । ୨୭ ।
ସକଳ ଦେବତା ଛନ୍ତି ଯେଉଁ ପ୍ରଦେଶରେ
ଅଳ୍ପ ପୁଣ୍ୟ ମେରୁତୁଲ୍ୟ ହୁଏ ସନ୍ତତରେ । ୨୮ ।
ଅହେ ଋଷିମାନେ ! ତହିଁ କଲେ ଅନୁଷ୍ଠାନ
ତଦାଚରେତ ନପାଇବ କାୟକ୍ଲେଶ ମାନ । ୨୯ ।
ଜନକ ବଶିଷ୍ଠ ଆଦି ସର୍ବ ମୁନିଗଣ
ତପ କରି ପାଇଥିଲେ ଏଥି ବିମୋକ୍ଷଣ । ୩୦ ।
ଇତି ଶ୍ରୀକପିଳସଂହିତାୟାଂ ଋଷ୍ୟୁପଦେଶୋ ନାମ ପଞ୍ଚମୋଽଧ୍ୟାୟଃ ।

—o—

## ଷଷ୍ଠୋଽଧ୍ୟାୟଃ ।

ଋଷୟ ଊଚୁଃ ।

ଏବେ ଶୁଣିବାକୁ ଇଚ୍ଛା ଆମ୍ଭମାନଙ୍କର
ଦେବାକରଙ୍କ ମାହାତ୍ମ୍ୟ କହ ମୁନିବର ! । ୧ ।

---

(୭) ବାଗ୍ଦେବୀର ବିଗ୍ରହବର୍ଯ୍ୟା ।

ଭରଦ୍ୱାଜ ଉବାଚ ।

ମୈତ୍ରେୟନାମରେ ଅଛୁ ଏକଇ କାନନ
ଶାମ୍ବ (୧) ମହାରୋଗ ଯହିଁ ହେଲେ ବିମୋଚନ । ୨ ।

ଋଷୟ ଊଚୁଃ ।

କାହିଁକି ଶାମ୍ବ ଆସିଲେ ନିଜ ଅସ୍ଥାନରୁ
ଅନୁଗ୍ରହ ପ୍ରାପ୍ତ ହେଲେ କେଉଁ ଦେବଠାରୁ । ୩ ।

ଭରଦ୍ୱାଜ ଉବାଚ ।

ଦୁଷ୍ଟ ନାଶି ଶିଷ୍ଟଜନ କରବେ ପାଳନ
ଦ୍ୱାପରରେ କୃଷ୍ଣରୂପ ହେଲେ ଜନାର୍ଦ୍ଦନ । ୪ ।
ଯେହ୍ନଦେବ ବାଲ୍ୟେ ଗୋପୀଗଣେ ହେଲେ ରତ
ଗୋପରେ କଂସରାଜାକୁ କରଥିଲେ ହତ । ୫ ।
ସବାନ୍ଧବନବନ୍ଧଛ ସେ ମଧୁସୂଦନ
ମଥୁରାରେ ଉଗ୍ରସେନ କିହଲେ ରାଜନ । ୬ ।
କାଲ ନେମିଠାରୁ (୨) ଭୟ ପାଇଣ ଶ୍ରୀହରି
ଦ୍ୱାରକାନାମେ ସ୍ଥାପିଲେ ସୁନ୍ଦର ନଗରୀ । ୭ ।
ନାନାବିଧ ସୁଖଭୋଗ କରି କେତେକାଳ
ପାଣ୍ଡବଙ୍କ ମଙ୍ଗଳରେ ହୋଇଲେ ତତ୍ପର । ୮ ।
ହସ୍ତିନାନଗରେ ଯୁଧିଷ୍ଠିର ରାଜନଙ୍କୁ
ଅଭିଷେକ ଦେଇ ଗଲେ ସ୍ୱକୀୟ ସ୍ଥାନକୁ । ୯ ।
ଏହିରୂପ ପ୍ରଜାବର୍ଗ କରିଣ ପାଳନ
ଧାମନାମ ଏକପୁତ୍ର ଲଭଲେ ଶୋଭନ । ୧୦ ।
ଜଳକ୍ରୀଡା କରିବାକୁ ପୁତ୍ର ଭାବି ମନେ
ଅଙ୍ଗନାମେଳରେ ରଙ୍ଗେ କଲେ ଉପବନେ । ୧୧ ।

(୧) ଦ୍ୱାପରଯୁଗର ରାଜା ଶ୍ରୀକୃଷ୍ଣଙ୍କର ତନୟ ।
(୨) ଲଙ୍କାଧିପତି ରାବଣର ମାତୁଳ ।

ତାହାଙ୍କ ରୂପକୁ ଦେଖି ସକଳ ଯୋଷିତ
ନାନାବିଧ ରଙ୍ଗେ ହେଲେ ଅତି ପ୍ରମୋଦିତ । ୧୨ ।
ଅବଗତ ହୋଇ ଏହା ଦେବ ନାରାୟଣ (୩)
ନାରୀମାନଙ୍କୁ ଧିକ୍କାର କଲେ ତତକ୍ଷଣ । ୧୩ ।
ଶାମ୍ବକୁ ଦେଖିଣ ପିତା ହୋଇ କ୍ରୋଧରତ
ଗମ୍ଭୀରଭାବରେ ତାଙ୍କୁ କହିଲେ ଏ ଗିର । ୧୪ ।
ଯେ କାରଣେ ମାତୃଗଣ ଅଜ ସୁରୁଚିର
ଶରୀରସୌନ୍ଦର୍ଯ୍ୟ ଦେଖି ହୋଇଲେ ଅଧୀର । ୧୫ ।
ସେହେତୁରୁ ମହାବ୍ୟାଧି ହୋଇବ ତୋହର
ନିଶ୍ଚିତ ବଚନ ମୋର ଶୁଣରେ ପାମର ! । ୧୬ ।

ଶାମ୍ବ ଉବାଚ ।

ପୁତ୍ର ଅପରାଧ କଲେ ପିତାଙ୍କ ଅଗ୍ରରେ
ତାହା କ୍ଷମଣୀୟ ସଦା ହୁଅଇ ମନରେ । ୧୭ ।

ଶ୍ରୀଭଗବାନୁବାଚ ।

ମୈତ୍ରେୟ ବନରେ (୪) ଭକ୍ତି ବନ୍ତ ତପ କରି
ପ୍ରସନ୍ନକରବୁ ଯେବେ ଦିବାକର ହର । ୧୮ ।
ତେତେବେଳେ ଏହି ମହାବ୍ୟାଧିରୁ ମୁକତ
ଲଭିବୁ ନିଶ୍ଚୟ ଏହା ଶୁଣ ମୂଢମତ ! । ୧୯ ।

ଭରଦ୍ୱାଜ ଉବାଚ ।

ଏହା ଜାଣି ଶାମ୍ବ ଅତି ଦୁଃଖିତ ମନରେ
ଦୃଢ ତପ ଆରମ୍ଭିଲେ ସେହି ଅରଣ୍ୟରେ । ୨୦ ।

---

(୩) ନାରା ଅର୍ଥାତ୍ ଜଳ, ବିଷ୍ଣୁ ପ୍ରଳୟକାଳୀନଜଳରେ ଅନନ୍ତଶୟନ କରନ୍ତି ଅତଏ ନାରାୟଣ ବୋଲାଯାଏ ।

(୪) ମୈତ୍ରେୟଋଷିଙ୍କ ଦ୍ୱାରା ଏହି ବନ ପୂର୍ବ ଖ୍ୟାତ ହୋଇଅଛି ।

ନିରାହାର ବାୟୁଭକ୍ଷ ହୋଇ ନିରଳସ
ଦ୍ୱାଦଶବାର୍ଷିକ ଜପ (୫) ଡିହ୍ନଲେ ବିଶେଷ । ୨୧ ।

ଶାମ୍ବ ଉବାଚ ।

ନମସ୍କାର କରୁଅଛି ହେ ଭକ୍ତବତ୍ସଲ !
ପ୍ରସନ୍ନ ହୋଇ ମୋ କଷ୍ଟ ଶୀଘ୍ର ଦୂର କର । ୨୨ ।
ବାରମ୍ବାର ଏହା କହି ପଡିଣ ଭୂତଳେ
ପ୍ରଭାକରଙ୍କୁ ଭାବନା କଲେ ଏକାନ୍ତରେ । ୨୩
ହୋଇଣ ସନ୍ତୁଷ୍ଟ ସେହି ସୂର୍ଯ୍ୟ ନାରାୟଣ
ସ୍ୱପ୍ନରେ ଶାମ୍ବମତିଙ୍କୁ କହିଲେ ବଚନ । ୨୪ ।

ସୂର୍ଯ୍ୟ ଉବାଚ ।

ସ୍ୱକୀୟ ଆକାର ମୋର ଦେଖିଣ ଏଠାରେ
ଶାପରୁ ହୋଇବ ମୁକ୍ତ ଶାମ୍ବ ! ତପୋବଳେ । ୨୫ ।
ଏଥିରେ ଯଦ୍ୟପି ଇଚ୍ଛା ହେଉଛି ତୁମ୍ଭର
ତେବେ ମୋର ନାମ ଜପ କର ନିରନ୍ତର । ୨୬ ।
ସୂର୍ଯ୍ୟ ଚିତ୍ରଭାନୁ ବିରୋଚନ ଦିବାକର
ଯମତାତ ଅଂଶୁମାଳୀ ତପନ ଭାସ୍କର । ୨୭ ।
ଛାୟାପତି ଗ୍ରହରାଜ (୬) ଲୋକପ୍ରକାଶକ
ଭକ୍ତବନ୍ଧୁ ଦୟାସିନ୍ଧୁ ଅଭୀଷ୍ଟପୂରକ । ୨୮ ।
ବିଭାବସୁ ଜଗନ୍ନାଥ ତଥା ପରାତ୍ପର
ଲୋକଚକ୍ଷୁ ତମିରାରି ସୁର ଦେବବର । ୨୯ ।
ଏରୂପ ଏକବିଂଶତି ନାମକୁ ଯେଜନ
ମୋର ଉଦୟସମୟେ ପଢ଼େ ସ୍ଥିର ମନ । ୩୦ ।

---

(୫) ଯେଉଁ ଜପକର୍ମ ବାରବର୍ଷରେ ପୂର୍ଣ୍ଣତା ପ୍ରାପ୍ତ ହୁଏ ।

[୬] ସକଳ ଜ୍ୟୋତିଃ ପଦାର୍ଥ ସୂର୍ଯ୍ୟଙ୍କଦ୍ୱାରା ଆକୃଷ୍ଟ ହୋଇ ତାହାଙ୍କର ଚତୁର୍ଦ୍ଦିଗରେ ନିୟତ ପରିଭ୍ରମଣ କରନ୍ତି ।

ତାହାର ସକଳ ଶାନ୍ତ କରେ ତତକ୍ଷଣ
କହୁଛୁ ତୁମ୍ଭଙ୍କୁ ଶାମ୍ବ ! ଏହିତ ବଚନ । ୩୧ ।
ଏହା କହିଲେ ସ୍ୱପନେ ସହସ୍ର କିରଣ
ସେହି ଋଷିଙ୍କର ହେଲା ନିଦ୍ରା ବିମୋଚନ । ୩୨ ।
ଆରଦିନ ପ୍ରଭାତରେ ସେହି ତପୋଧନ
ଚନ୍ଦ୍ରଭାଗାନଦୀତୀରେ (୭) କଲେକ ଗମନ । ୩୩ ।
ସ୍ନାହାନ ସାରିଣ ସେହି ପବିତ୍ର ଜଳରେ
ଦେଖିଲେ ଏକ ଅଦ୍ଭୁତ ଘଟନା ସେ ସ୍ଥଳେ । ୩୪ ।
ଅବୟବରହି ଭୁଜ ଯୁଗରେ ଶୋଭିନୀ
ପଦ୍ମପରେ ସ୍ଥିତା ସର୍ବଲୋକବିମୋହିନୀ । ୩୫ ।
ଜଳମଧ୍ୟେ ଦେଖି ସେହି ସୁନ୍ଦର ମୂରତି
ଶାମ୍ବ ହୋଇଲେ ସେଠାରେ ପ୍ରମୋଦିତ ଅତି । ୩୬ ।
ପ୍ରାସାଦ ନିର୍ମାଣି ତାଙ୍କୁ କରିଣ ସ୍ଥାପନ
ବହୁକାଳ କଲେ ତହିଁ ସୂର୍ଯ୍ୟଆରାଧନ । ୩୭ ।
ଅନନ୍ତର ରୋଗରୁ ସେ ପାଇଣ ମୁକତି
ଦ୍ୱାରକାରେ (୮) ଉପସ୍ଥିତ ହୋଇଲେ ଝଟତି । ୩୮ ।
ମୈତ୍ରେୟଋଷିଙ୍କ ତପୋବନରେ ଅର୍ଚ୍ଚିତ
ସୁନ୍ଦର ଏହି ଅରଣ୍ୟ ଭୁବନ ବିଖ୍ୟାତ । ୩୯ ।
ରବିବାରେ ସୂର୍ଯ୍ୟଙ୍କୁ ଯେ ତହିଁ ଦରଶନ
କରଇ, ସେ ଅନ୍ତେ ପ୍ରାପ୍ତ ସୁରଲୋକେ ସ୍ଥାନ । ୪୦ ।
ଶ୍ରୀମଙ୍ଗଳନାମେ ତୀର୍ଥ ଅଛଇ ତହିଁରେ
ସ୍ନାନମାତ୍ରେ ଯହିଁ ମୁକ୍ତି ହୁଏ ସହଜରେ । ୪୧ ।

[୭] ଚନ୍ଦ୍ରଭାଗ ନାମକ ପର୍ବତରୁ ଏହି ନଦୀ ବହିର୍ଗତ, ଏହାର ଜଳ ଗଙ୍ଗାତୁଲ୍ୟ ପରମପବିତ୍ର ଓ ମୁକ୍ତିପଦ ।

[୮] ଶ୍ରୀକୃଷ୍ଣଙ୍କର ରାଜଧାନୀ ।

ତ୍ରୈଲୋକ୍ୟପାବନ ସର୍ବଦୁରିତଧ୍ୱଂସନ
ଦେବଗନ୍ଧର୍ବସେବିତ ବିଶେ ସୁଶୋଭନ । ୪୨ ।
ସକଳବାଞ୍ଛାପୂରକ ଅଛି ଏକସ୍ଥଳ
ଶାଲ୍ମଳୀଖଣ୍ଡନାମରେ ଖ୍ୟାତ ନାମ ଯାର । ୪୩ ।
ସର୍ବତୀର୍ଥସାର (୧) ତହିଁ ଅଛଇ ସାଗର
ଯହିଁ ଅବଗାହନରେ ମୁକତ ମୁକର । ୪୪ ।
ଚନ୍ଦ୍ରଭାଗାଜଳେ ସ୍ନାନ କରେ ଯେଉଁ ନର
ଦେବଲୋକ ଲଭେ ସେହୁ ଯୁଗରେ କେବଳ । ୪୫ ।
ମୁନିଜନପୂର୍ଣ୍ଣ ସର୍ବ ଜନ୍ତୁରେ ସେବିତ
ଅର୍କବଟ ଅଛି ତହିଁ ଜଗତ ବିଦିତ । ୪୬ ।
ପ୍ରାଣିହିତ କରିବାକୁ ଦେବ ଦିବାକର
ଶାଖାରୂପେ ଅବିର୍ଭୂତ ତହିଁ ନିରନ୍ତର । ୪୭ ।
ସେଠାରେ ଭକତ ରଥଯାତ୍ରା ରବିଙ୍କର
ଦେଖିଲେ, ମରଣକାଳେ ହୁଅଇ ଅମର । ୪୮ ।

ଇତିଶ୍ରୀ କପିଳସଂହିତାୟାଂ ମୈତ୍ରେୟବନମାହାତ୍ମ୍ୟଂନାମ ଷଷ୍ଠୋଽଧ୍ୟାୟଃ ।

---

## ସପ୍ତମୋଽଧ୍ୟାୟଃ ।

ଭରଦ୍ୱାଜ ଉବାଚ ।

ବିରଜା ନାମକକ୍ଷେତ୍ର (୧)ଅତି ସୁଶୋଭନ
ବ୍ରହ୍ମା ପୂର୍ବେ କରିଥିଲେ ଯାହାକୁ ନିର୍ମାଣ । ୧ ।

---

[୧] ପୃଥିବୀସ୍ଥ ତୀର୍ଥମାନେ ସାଗରଗାମୀ ହେତୁରୁ ସମୁଦ୍ର ତୀର୍ଥରାଜନାମରେ ଅଭିହିତ ।

[୧] ଉତ୍କଳର ଅନ୍ତର୍ଗତ ଯାଜପୁର ନଗରରେ ବିରଜାଦେବୀଙ୍କର ମନ୍ଦିର ଅଛି ।

ଦେବୀଙ୍କୁ ଦେଖିଲେ ଭକ୍ତ ସେହି ପୁଣ୍ୟସ୍ଥଳେ
ରଜୋଗୁଣପ୍ରକ୍ଷାଳିତ ହୁଏ ସଦନରେ । ୨ ।
ସାଧକମାନଙ୍କ ହିତ କରିବା କାରଣେ
ବିରଜା ରହିଲେ ବାସ କରିଲେ ଯତନେ । ୩ ।
ଦଶସହସ୍ର ବରଷ ବାରାଣସୀପୁରେ
ହରଙ୍କପୂଜନ ଯେହୁ କରେ ସନ୍ତତରେ । ୪ ।
ତହିଁରେ ଯେଫଳପ୍ରାପ୍ତି ହୁଅଇ ତାହାର
ଦେବୀଙ୍କଦର୍ଶନେ ତାହା ଲଭଇ ସତ୍ୱର । ୫ ।
ଅଖଣ୍ଡଲେଶର ତହିଁ ଯେକରେ ଦର୍ଶନ
ଶମନଦଣ୍ଡରୁ ମୁକ୍ତ ହୁଏ ସେହି ଜନ । ୬ ।
ସେହି ଭଗବତୀଙ୍କର ଈଶାନ କୋଣରେ
ଗୟାନାମେ ( ୧ ) ତୀର୍ଥ ବିରାଜିତ ସେହି ସ୍ଥଳେ । ୭ ।
ପିତୃଗଣମୁକ୍ତିପ୍ରଦ ସେହି ପୂତଜଳେ
ପିଣ୍ଡଦାନ କରଇ ଯେ ବିଶୁଦ୍ଧଚିତ୍ତରେ । ୮ ।
ପୂର୍ବପୁରୁଷମାନଙ୍କୁ ତାରଣ ସେ ଜନ
ଅଳ୍ପକାଳରେ ଲଭଇ ସଂସାରୁ ମୋଚନ । ୯ ।
ବୈତରଣୀ ନାମେ ନଦୀ ଅଛି ସେସ୍ଥାନରେ
ମହାପାତକ ( ୨ ) ନାଶଇ ଦର୍ଶନମାତ୍ରରେ । ୧୦ ।
ତହିଁରେ କରିଣ ସ୍ନାନ ଯେ ଦେଖେ ହରଙ୍କୁ
କୁଳସପ୍ତ ହୋଇ ପ୍ରାପ୍ତ ସ୍ୱରଗମାର୍ଗକୁ । ୧୧ ।
ତାପତ୍ରୟବିଭଞ୍ଜନ ତହିଁ ତ୍ରିଲୋଚନ
ସଦା ବିରାଜିତ ମହାମହିମାରେ ପୁଣି । ୧୨ ।

---

[ ୧ ] [illegible] ପ୍ରସିଦ୍ଧ ।
[ ୨ ] ଗୋବଧ ବ୍ରହ୍ମହତ୍ୟା ଓ ସୁରାପାନ ପ୍ରଭୃତି ।

କପିଁ ନାମକ କ୍ଷେତ୍ର ଅଛେ ସେ ସ୍ଥାନରେ
ମାନବ ହୁଅନ୍ତି ଯେ ନାଶେ ସର୍ଗରେ । ୧୩ ।
ଗୋଭଦ୍ର, ସୋମ, ଅଲ୍ଲାମ୍ଭୁ, ତୀର୍ଥମାନଙ୍କରେ
ଅଭୀଷ୍ଟ ସଫଳ ହୁଏ ସ୍ନାହାନ ମାତ୍ରରେ । ୧୪ ।
ଅଲମ୍ବୁମାହାତ୍ମ୍ୟ କହୁ ଶୁଣ ଋଷିଗଣ !
ମାନ୍ଧାତା ( ୪ ) ନୃପତି ଏକ ଥିଲେ ମହାପ୍ରାଣ । ୧୫ ।
ସତ୍ୟବାଦୀ ଭକ୍ତବନ୍ଧୁ ସଦାପ୍ରିୟମ୍ବଦ
କ୍ଷମାଶୀଳ ଦୟାବନ୍ତ ଶାସ୍ତ୍ରବିଶାରଦ । ୧୬ ।
ଏକଦିନେ ନରରାଜନ ହୋଇ ହୃଷ୍ଟମନ
ଏକାକୀ ହୋଇଣ ବନେ କଲେକ ଭ୍ରମଣ । ୧୭ ।
ଦେଖିଣ ସେଠାରେ ଏକ ବୃଦ୍ଧ ଅଜଗର
ତାହାଙ୍କୁ ଏକଶରରେ ବଧିଲେ ନୃବର । ୧୮ ।
ସ୍ୱକୀୟପତିର ମୃତ୍ୟୁ ଦେଖିଣ ସର୍ପିଣୀ
ସେହିକ୍ଷଣେ ଶାପଦେଲା ଅତ୍ୟନ୍ତ ଦୁଃଖିନୀ । ୧୯ ।

ସର୍ପିଣ୍ୟୁବାଚ ।

ଯେଉଁହେତୁ ମୋହର ନିର୍ଦୋଷ ପ୍ରାଣପତି
ସଂହାରିଛ ନୃପ ! ତୁମ୍ଭେ ପାଇବ ଦୁର୍ଗତି । ୨୦ ।
ଏହି କଥା ଶୁଣିବାମାତ୍ରକେ ନରବର
ଶୃଗାଲରୂପ ପ୍ରାପତ ହେଲେ ଅନନ୍ତର । ୨୧ ।
ସେ ସର୍ପିଣୀ ଶୁଣି ତାଙ୍କ ଆରତ ବଚନ
ତୁଷ୍ଟହୋଇ ଏହିକଥା କହିଲା ବଚନ । ୨୨ ।
ବଶିଷ୍ଠ (୫) ଋଷିଙ୍କ ସହ ଯେବେ ହେ ରାଜନ !
ବରଙ୍ଗାକ୍ଷେତ୍ରକୁ ତୁମ୍ଭେ କରିବ ଗମନ । ୨୩ ।

[ ୪ ] ସୂର୍ଯ୍ୟବଂଶୀୟ ରାଜା ଯୁବନାଶ୍ୱଙ୍କର ତନୟ ।
[ ୫ ] ସୂର୍ଯ୍ୟବଂଶୀୟ ରାଜାମାନଙ୍କର କୁଳଗୁରୁ ଓ ସପ୍ତର୍ଷିମାନଙ୍କମଧ୍ୟରେ ଏକତମ ।

ଅଲ୍ବାମ୍ବୁନାମକ ତୀର୍ଥେ କରିଣ ସ୍ନାହାନ
ମୋର ଏହି ଅଭିଶାପୁ ଲଭିବ ମୋଚନ । ୨୪ ।
ଯେଉଁ କ୍ଷେତ୍ରଅଟେ ସଦା ପରମପାବନ
ବିଭୂସିତ ହୋଇଅଛୁ ସ୍ୱରଗ ସମାନ । ୨୫ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଆଦିରେ ପୂରିତ
ଅନୁଷ୍ଠାନରତ ମୁନିଗଣରେ ଶୋଭିତ । ୨୬ ।
ତାହାର ଏ ବାକ୍ୟ ଶୁଣି ନୃପ ଶାପଗ୍ରସ୍ତ (୨)
ଯାଇ ଗୁରୁଙ୍କଆଶ୍ରମେ କହିଲେ ସମସ୍ତ । ୨୭ ।
ତ୍ରାହି ୨ ମହାମୁନି ଅହେ ବ୍ରହ୍ମବର !
ଏହା କହି ପ୍ରବେଶିଲେ ଋଷିଙ୍କ ଅଗ୍ରର । ୨୮ ।
ତାହାଙ୍କ ଆରତ ବାକ୍ୟ ଶୁଣି ସେ ଈଶ୍ୱର
ଶୀଘ୍ର ଆଶ୍ରମୁ ବାହାରି କହିଲେ ଏ ଗୀର । ୨୯ ।

ବଶିଷ୍ଠ ଉବାଚ ।

ଯେଉଁ ହେତୁ ଆସିଅଛ ହୋଇଣ ବିପନ୍ନ
କହ ମୋର ସମୀପରେ ତଥ୍ୟର କାରଣ । ୩୦ ।

ଶୃଗାଳ ଉବାଚ ।

ମାନବା ଅଟଇ ମୁହିଁ ଏହି ଜଗତରେ
ମୃଗପ୍ରାଣମିତ୍ର ବୁଲୁଥିଲି ଅରଣ୍ୟରେ । ୩୧ ।
ତହିଁ ଏକ ଭୁଜଙ୍ଗମ କଲି ମୁଁ ସଂହାର
ତାହା ଜାୟାର ଶାପରୁ ଏ ରୂପ ମୋହର । ୩୨ ।
ଅହେ କୁଳଗୁରୁ ! ତୁମ୍ଭେ ମୋତେ ରକ୍ଷାକର
ତୁମ୍ଭପ୍ରସାଦରେ ହେଉ ମୋହର ମଙ୍ଗଳ । ୩୩ ।

ଭରଦ୍ୱାଜ ଉବାଚ ।

ଶୃଗାଳବଚନ ଶୁଣି ସେହି ତପୋଧନ
ବିରଜା କ୍ଷେତ୍ରକୁ ତହୁଁ କଲେକ ଗମନ । ୩୪ ।

---

( ୨ ) ଅଭିଶପ୍ତ ।

ତାହାଙ୍କୁ ନେଇଣ ସେହି ତୀର୍ଥପାଶେ ( ୭ ) ଯାଇ
ସ୍ନାନ କରାଇଲେ ପାପବିମୋଚନ ପାଇଁ । ୩୫ ।
ମାନ୍ଧାତା ଶାପରୁ ମୁକ୍ତ ହେଲେ ସେହିକ୍ଷଣ
ସ୍ୱକୀୟରୂପକୁ ପାଇ ହେଲେ ସୁସ୍ଥମନ । ୩୬ ।
ଆକାଶରୁ ପୁଷ୍ପବୃଷ୍ଟି ହେଲା ସେ ସମୟେ ( ୮ )
ନୃପ ନିଜରାଜ୍ୟେ ପରେ କଲେକ ବିଜୟେ । ୩୭ ।
ମୃଗୟା ବର୍ଜନକର ପ୍ରଫୁଲ୍ଲଚିତ୍ତରେ
ସ୍ୱଧର୍ମରେ ପ୍ରଜାବର୍ଗ ସାଦରେ ପାଳଲେ । ୩୮ ।
ଅନନ୍ତର ବଶିଷ୍ଠ ସେ ଶିଷ୍ୟ ସମନ୍ୱିତ
ହୋଇଣ, ନିଜଆଶ୍ରମେ ମିଳଲେ ତୁରତ । ୩୯ ।
ଲୋକମାନେ ଜାଣି ଏହି ଦଶା ରାଜାଙ୍କର
କେବେ ନୋହିଲେ ମୃଗବଧେ ଅଗ୍ରସର । ୪୦ ।

ଇତିଶ୍ରୀ କପିଳସଂହିତାୟାଂ ମାନ୍ଧାତାଶାପମୁକ୍ତିର୍ନାମ ସପ୍ତମୋଽଧ୍ୟାୟଃ ।



# ଅଷ୍ଟମୋଽଧ୍ୟାୟଃ ।

ଋଷୟ ଊଚୁଃ ।

ଅମ୍ବାମ୍ବୁମାହାତ୍ମ୍ୟ ସର୍ବେ ଜାଣିଲୁ ଅପାର
ଅନ୍ୟ ଗୁପ୍ତତୀର୍ଥକଥା କହ ମୁନିବର ! । ୧ ।

ଭରଦ୍ୱାଜ ଉବାଚ ।

ମୃତ୍ୟୁଞ୍ଜୟ ନାମେ କ୍ଷେତ୍ର ଅଛି ସେ ସ୍ଥାନରେ ( ୯ )
ସକଳଦେବପୂଜିତ ପାପତାପ ହରେ । ୨ ।

---

[ ୭ ] ଅମ୍ବାମ୍ବୁତୀର୍ଥସମୀପେ ।
( ୮ ) ଶାପମୋଚନକାଳରେ ।
( ୯ ) ବିରଜାକ୍ଷେତ୍ରରେ ।

ମୃକଣ୍ଡୁତନୟ ପୂର୍ବେ ଯହିଁ କଲ ସ୍ନାନ
ସପ୍ତକଳ୍ପାନ୍ତଜୀବିତ ହେଲେ ଋଷିଗଣ ! । ୩ ।
ଭକ୍ତିସହକାରେ ତାଙ୍କୁ ଦେଖଇ ଯେ ନର
ପରଜ୍ଞର ହୁଏ ମୃତ୍ୟୁ ଅବଶ୍ୟ ତାହାର । ୪ ।
ହୋଡ଼, ଶୁକ, ସିଦ୍ଧେଶ୍ୱର, ତୀର୍ଥମାନଙ୍କରେ
ଅବଗାହି ଯହିଁ ମୁକ୍ତି ଲଭନ୍ତି ପାମରେ । ୫ ।
ନାନାବିଧ ତୀର୍ଥାଶ୍ରମ ଗନ୍ଧର୍ବନଗର
ଏହିମାନଙ୍କରେ ଦଣେ ଅଛି ମନୋହର । ୬ ।
ହୋଡଦେବୀଙ୍କୁ ସେଠାରେ ଯେ କରେ ଦର୍ଶନ
ନରହତ୍ୟା ପାପ ତାର ହୁଏ ବିମୋଚନ । ୭ ।
ଭୌମବାର ଅବା ଚତୁର୍ଦ୍ଦଶୀ ଗୁରୁବାର
ଏଥିରେ ବିରଜାଙ୍କୁ ଯେ ଦେଖେ ବାରମ୍ବାର । ୮ ।
ଶୁଭଦା ଦେବୀ ତାଠାରେ ହୋଇଣ ପ୍ରସନ୍ନ
ମୁକ୍ତି ( ୨ ) ପ୍ରଦାନକରନ୍ତି ସତ୍ୟ ଏ ବଚନ । ୯ ।
ତାହାଙ୍କ ଅଗ୍ରତେ ଜପ କରଇ ଯେ ଜନ
ମନ୍ତ୍ରସିଦ୍ଧି ହୁଏ ତାର ନିଶ୍ଚୟ ବଚନ । ୧୦ ।
ସ୍ତଣ୍ଡିଳାସନରେ ( ୩ ) ବସି ବିଷ୍ଣୁଙ୍କୁ ସେସ୍ଥଳେ
ଗନ୍ଧପୁଷ୍ପାଦରେ ପୂଜା କରେ ଯେ ଭକ୍ତିରେ । ୧୧ ।
ଷଣ୍ମାସମଧ୍ୟରେ ଦେବ ହୋଇଣ ପ୍ରସନ୍ନ
ପ୍ରଦାନ କରନ୍ତି ତାଙ୍କୁ ସ୍ୱକୀୟ ଅସ୍ଥାନ । ୧୨ ।
ବିରଜାକ୍ଷେତ୍ରର ଅଛି ଯେତେ ଯେତେ ଗୁଣ
କେହି ତାହା କହିବାକୁ ନୋହିବ ଭାଜନ (୪) । ୧୩ ।

---

( ୨ ) ସଂସାରବନ୍ଧନରହିତ୍ୟ ।
( ୩ ) କୁଶାସନରେ ।
( ୪ ) ଥାଏ ବା ଉପଯୁକ୍ତ ।

ସହସ୍ରଯୋଜନାନ୍ତରେ ଯେଉଁ ଭକ୍ତଜନ
ସର୍ବଦା ତାହାଙ୍କୁ ମନେ କରଇ ଚିନ୍ତନ । ୧୪ ।
ଦେବୀ ହୋଇଣ ସନ୍ତୁଷ୍ଟ ତାହାର ଭାବରେ
ଅଭୀଷ୍ଟ ଦାନକରନ୍ତି ଅଳପକାଳରେ । ୧୫ ।
ଅହେ ମୁନିଗଣ ! ଜପ କର ସେ କ୍ଷେତ୍ରରେ
ପାଇବ ତାହାର ଫଳ ବିଶେଷଭାବରେ । ୧୬ ।

ଇତିଶ୍ରୀ କପିଳସଂହିତାୟାଂ ବିରଜାକ୍ଷେତ୍ରମାହାତ୍ମ୍ୟଂ ନାମ ଅଷ୍ଟମୋଽଧ୍ୟାୟଃ ।



## ନବମୋଽଧ୍ୟାୟଃ ।

ଋଷୟ ଊଚୁଃ ।

ଅନନ୍ତର ଦେବଦେବ ସଦାଶିବଙ୍କର
ସକଳ କଥା ଆମ୍ଭଙ୍କ କହ ମୁନିବର ! । ୧ ।
ବିରଜାକ୍ଷେତ୍ର ଅଟଇ ସର୍ବପାପହର
ମୈତ୍ରେୟନାମକ ବନ ତହିଁ ହୁଏ ସାର । ୨ ।
ବାଲୁକାରେ ସମାବୃତ ଅତ୍ୟନ୍ତ ଦୁଃସହ (୧)
ରବିକିରଣରେ ସଦା ବହ୍ନିକଷ୍ଟାବହ । ୩ ।
ଏଥିରୁ ପବିତ୍ର ଆଉ ଉତ୍କୃଷ୍ଟ କାନନ
ତପସ୍ୟା କରିବୁ କହ ଆହେ ତପୋଧନ ! । ୪ ।

ଭରଦ୍ୱାଜ ଉବାଚ ।

ପରମପାବନ ତୀର୍ଥ ଅଛି ଶିବଙ୍କର
କପିଳାସ (୨) ନାମେ ଖ୍ୟାତ ଅତ୍ୟନ୍ତ ସୁନ୍ଦର । ୫ ।

(୧) ଅଗମ୍ୟ ।
(୨) ଉତ୍କଳର ସ୍ୱନାମପ୍ରସିଦ୍ଧ ପର୍ବତବିଶେଷ ।

ବାରଙ୍କା ଏକାମ୍ର ଦୁଇ କ୍ଷେତ୍ରର ମଧ୍ୟରେ
ବିଖ୍ୟାତ ଏହିସ୍ଥାନ ଅଟେ ଉତ୍କଳରେ । ୬ ।
ତାହାର ଶିଖରେ ବସି ଯେହୁ ତପ କରେ
ସମସ୍ତରେ ତାର ସିଦ୍ଧି ହୁଏ ସେହିସ୍ଥଳେ । ୭ ।

ମୋକ୍ଷଦ କାମଦ ସ୍ୱେଚ୍ଛାଧୀନ ମୃତ୍ୟୁଞ୍ଜୟ
ଯତ ସର୍ବକ୍ଷେତ୍ର ଏଥି ବିହିଲେ ଆଶ୍ରୟ । ୮ ।
ଯେଉଁକାଳେ କୈଳାସକୁ ଦୁରାତ୍ମା ରାବଣ
ଉଠାଇଲା ବାହୁବଳେ କରଣ ଯତନ । ୯ ।

ଏକଶୃଙ୍ଗ ସେହିକ୍ଷଣେ ହୋଇଲା ପତିତ
କପିଳାସନାମତହୁଁ ହୋଇଲା ବିଖ୍ୟାତ । ୧୦ ।
ଏପର୍ବତ ହେଲା ପରେ ଶିବଙ୍କ ବସତି
ଦେବଗଣ ରହିଛନ୍ତି ଯହିଁ ତୁଷ୍ଟମତି । ୧୧ ।
ସେଠାରେ ହରଙ୍କୁ ଦେଖି ନମଇ ଯେଜନ
ଅଶେଷ କଳୁଷ ତାର ହୁଅଇ ଖଣ୍ଡନ । ୧୨ ।
ଦେବତାମାନେ ଭାବନ୍ତି ସ୍ୱରଗ ଲୋକରେ
କେବେ ଯାଇଣ ଦେଖିବା ଶିବଙ୍କୁ ସେଠାରେ (୩)। ୧୩ ।

ପୟୋଽମୃତ ସମ ତୀର୍ଥ ଭୂଲୋକରେ ନାହିଁ
ନିଶ୍ଚୟ ଜାଣ ଏକଥା କହୁଛୁ ବୁଝାଇ । ୧୪ ।
ସୂର୍ଯ୍ୟବଂଶସମ୍ଭବ ସୌଦାସ ନୃପତି
ପୂର୍ବକାଳେ ଥିଲେ ଧୀର ସୁବିଖ୍ୟାତ ଅତି । ୧୫ ।
ରୂପେ କାମଦେବ ସାଧୁ ସର୍ବଗୁଣାନ୍ୱିତ
ବୁଦ୍ଧିବଳେ ବୃହସ୍ପତି (୪) ଯେହ୍ନେ ସୁପଣ୍ଡିତ । ୧୬ ।

---

(୩) କପିଳାସପର୍ବତରେ ।

(୪) ସୁରାଚାର୍ଯ୍ୟ ଓ ନବଗ୍ରହମାନଙ୍କମଧ୍ୟରେ ପଞ୍ଚମଗ୍ରହ ।

ତପ କରିବାକୁ ଇଚ୍ଛା ହେବାରୁ ତାଙ୍କର
କୁଳଗୁରୁ ବଶିଷ୍ଠଙ୍କୁ ପୁଚ୍ଛିଲେ ନୃବର । ୧୭ ।

ବଶିଷ୍ଠ ଉବାଚ ।

ବାରାଣସୀସ୍ଥାନ ଅଟେ ମନ୍ତ୍ରସିଦ୍ଧିସ୍ଥଳ
ଯହିଁ ବିଶ୍ୱେଶ୍ୱର ଛନ୍ତି ସାଧକସମ୍ବଳ । ୧୮ ।
ମଣିକର୍ଣ୍ଣିକାତୀର୍ଥରେ (୫) ଯେ ଅବଗାହନ
କରଇ ତାହାର ପାପ ହୁଅଇ ମୋଚନ । ୧୯ ।

ଭରଦ୍ୱାଜ ଉବାଚ ।

ଏହାଶୁଣି ମହୀପତି ଯାଇ ସେହି ସ୍ଥାନ
ସ୍ନାନକରି ଆରମ୍ଭିଲେ ଜପ ଅନୁଷ୍ଠାନ । ୨୦ ।
କେତେକାଳେ ତୁଷ୍ଟ ହୋଇ ଦେବ ସନାତନ
ସ୍ୱପ୍ନରେ ନୃପମଣିଙ୍କୁ କହିଲେ ବଚନ । ୨୧ ।

ଶଙ୍କର ଉବାଚ ।

ତୁମ୍ଭ ତପୋବଳରେ ମୁଁ ହୋଇଛି ପ୍ରସନ୍ନ
ଯାଅ ତୁମ୍ଭେ ଉତ୍କଳେ ମୋ କପିଳାସବନ । ୨୨ ।
ସେଠାରେ ମୁଁ ଦେଖାଇବି ମୋହର ସ୍ୱରୂପ
ଯାହା ଦେଖି ତୁମ୍ଭେ ମୁକ୍ତ ହୋଇବ ଭୂମିପ ! । ୨୩ ।
ପଯ୍ୟୋମୃତ କର ସ୍ନାନ ମୋତେ ଆରାଧନ
କଲେ ଅବଶ୍ୟ ପାଇବ ସିଦ୍ଧି ଅଗଣନ । ୨୪ ।
ସେଠାରେ ଜମ୍ବୁକୁଣ୍ଡରେ (୬) ସ୍ନାନକରି ନର
ସ୍ୱର ଲୋକ ପ୍ରାପ୍ତ ହୁଏ ଶୁଣ ନରେଶ୍ୱର ! । ୨୫ ।
ପରେ ନୃପ ଆସି କପିଳାସର ଶେଖର
ଆରମ୍ଭିଲେ ତପ ନିଜ ଅଭୀଷ୍ଟ ସିଦ୍ଧିର । ୨୬ ।

---

( ୫ ) ବିଷ୍ଣୁଙ୍କର କଠୋର ତପସ୍ୟା ଦର୍ଶନରେ ବିସ୍ମିତ ଶିବଙ୍କର ମଣିମୟ କର୍ଣ୍ଣଭୂଷଣ ଏହିସ୍ଥାନରେ ପତିତ ହୋଇଥିବାରୁ ଏହାର ନାମ ମଣିକର୍ଣ୍ଣିକା ହୋଇଅଛି ।
( ୬ ) ଏହି କୁଣ୍ଡର ଜଳ ମୁକ୍ତିପ୍ରଦ ଓ ପରମ ପବିତ୍ର ।

ଅନନ୍ତର ସେସ୍ଥାନରେ ପାଇ ସାକ୍ଷାତ୍କାର । (୭)
ସ୍ୱର୍ଗଲୋକ ପ୍ରାପ୍ତ ହେଲେ ମରଣେ ଭୂପାଳ । ୨୭ ।
ଇତିଶ୍ରୀକପିଳସଂହିତାୟାଂ ସୌଦାସନୃପମୋକ୍ଷୋ
ନାମ ନବମୋଽଧ୍ୟାୟଃ ।

——o——

## ଦଶମୋଽଧ୍ୟାୟଃ ।

ଋଷୟ ଊଚୁଃ ।

ବହୁ ଲୋକପୂର୍ଣ୍ଣ ସଦା ଅଟେ ସେହି ସ୍ଥାନ
କପର କରନ୍ତି ତପ ହୋଇ ସ୍ଥିରମନ । ୧ ।

ଭରଦ୍ୱାଜ ଉବାଚ ।

ପରମ ପବିତ୍ର ଅଛି ଅନ୍ୟ ଗୋପ୍ୟ ସ୍ଥାନ
ଋଷିମୁନିଙ୍କ କାଂକ୍ଷିତ ମୁକ୍ତିର ନିଦାନ । ୨ ।
କଦମ୍ବ ବକୁଳ ମଲ୍ଲୀ ଯୂଥିକା ସେବତୀ
ନାଗକେଶର ବକୁଳ ପ୍ରିୟଙ୍ଗୁ ମାଳତୀ । ୩ ।
ପାରିଜାତ କର୍ଣ୍ଣିକାର ମୁଚୁକୁନ୍ଦ ବଟ
ଅଶ୍ୱତ୍ଥ ପିଚୁମର୍ଦ୍ଦକ (୧) ଏଥିରେ ପ୍ରକଟ । ୪ ।
କଦଳୀ ପନସ ନାରକେଳ କରବୀର
ମାଧବୀ ଲତା ମଣ୍ଡିତ ଦିଶେ ମନୋହର । ୫ ।
ରାଜହଂସ କୁକ୍କୁଟ ଖଞ୍ଜରୀଟ (୨) ଚାତକ
ନୀଳକଣ୍ଠ କାଦମ୍ବ ଚକୋର ଶୁକ ବକ । ୬ ।
ଇତ୍ୟାଦି ପକ୍ଷିଗଣରେ ହୁଏ ନିନାଦିତ
ସୁବାସିତ ପୁଷ୍ପଗନ୍ଧେ ସଦା ପ୍ରମୋଦିତ । ୭ ।

---

(୭) ଉକ୍ତ ଋଟିଳାସରେ କାଶୀବିଶ୍ୱେଶ୍ୱରଙ୍କର ଦର୍ଶନ ।
(୧) ନିମ୍ବବୃକ୍ଷ ।
(୨) ଖଞ୍ଜନନାମକ ପକ୍ଷୀବିଶେଷ ।

ବନମାଳା ଅଳଙ୍କୃତ ଦେବ ନାରାୟଣ
ଗନ୍ଧର୍ବଗଣରେ ଯହିଁ କରନ୍ତି ଭ୍ରମଣ । ୮ ।
ଏକଆମ୍ରେ ପୂର୍ବେ ଏକ ଯତି ତପୋଧନ
ସ୍ଥାପିଥିବାରୁ ଯେ ଖ୍ୟାତ ଏକାମ୍ରକାନନ (୩)। ୯ ।
ତୁମ୍ଭେ ସେସ୍ଥାନକୁ ଯାଇ ଯଦି ତପ କର
ନିଶ୍ଚୟ ଲଭିବ ସର୍ବକାମନା ସତ୍ୱର । ୧୦ ।
ଇତିଶ୍ରୀକପିଳସଂହିତାୟାଂ ଏକାମ୍ରବର୍ଣ୍ଣନଂ
ନାମ ଦଶମୋଽଧ୍ୟାୟଃ ।



## ଏକାଦଶୋଽଧ୍ୟାୟଃ ।

ଋଷୟ ଊଚୁଃ ।
କୋଟିଲିଙ୍ଗାତ୍ମକ ସେହି ପବିତ୍ର କାନନ
ସର୍ବକଥା ସବିସ୍ତର କହ ମୁନିବର ! । ୧ ।
ଭରଦ୍ୱାଜ ଉବାଚ ।
ପ୍ରାଣିମାନଙ୍କ ଅଭୀଷ୍ଟ ପ୍ରଦାନେ ତତ୍ପର (୧)
ବିରାଜିତ ଯହିଁ ସଦା ଜଗତ ଈଶ୍ୱର । ୨ ।
ବାରାଣସୀସ୍ଥାନ ଅତି ଭକତ ବତ୍ସଳ
ଏହିବନେ ବର୍ଜିତ ହୋଇଛନ୍ତି ହର । ୩ ।
ପୂର୍ବେ ତ୍ରେତାଯୁଗେ ଶିବ ନାରଦ ଅଗ୍ରରେ
କାଶୀ ଉତ୍ତମ୍ୟକଥା ଗୁପ୍ତରେ କହିଲେ । ୪ ।
ଜନାକୀର୍ଣ୍ଣ ନାସ୍ତିକାଙ୍କେ ଏହି ସ୍ଥଳ
ହେବ ଏକସମୟରେ ହେମୁନିପ୍ରବର ! । ୫ ।

---

( ୩ ) ଭୁବନେଶ୍ୱର ।
( ୧ ) ସଦାଉଦ୍ୟତ ।

ଧର୍ମଲୋପ ହୋଇ ହେବ ଅଧର୍ମଉଦ୍ଭବ
ରହିବାକୁ କେଉଁ ସ୍ଥାନ ମୋପକ୍ଷେ ସମ୍ଭବ । ୬ ।

ନାରଦ ଉବାଚ ।

ଉତ୍କଳରେ ଅଛୁ ଯେଉଁ ଲବଣ ସାଗର
ତାହାର ନିକଟେ ଶୋଭେ ଏକ ଗୂଢସ୍ଥଳ । ୭ ।
ବିଖ୍ୟାତ ହୋଇଛି ଯାହା ଏକାମ୍ରନାମରେ
ତାହାତୁଲ୍ୟ ସ୍ଥାନ ନାହିଁ ଅବନୀମଣ୍ଡଳେ । ୮ ।
ବସନ୍ତି ମୁକ୍ତିସିଦ୍ଧିଗଣ ସେଠାରେ ଭାବନ୍ତ
ବିଶ୍ରାମଭୁବନ ତାକୁ ସର୍ବଦା ମଣନ୍ତ । ୯ ।
ଶୁଣି ଏସମସ୍ତକଥା ସେଚନ୍ଦ୍ରଶେଖର
ପରିବାରସହିତରେ ହୋଇଲେ ବାହାର । ୧୦ ।
ନାରଦଙ୍କୁ ସଙ୍ଗେ ନେଇ ଆସିଣ ସତ୍ୱର
ଏକାମ୍ରବନରେ ଉପସ୍ଥିତ ହେଲେ ହର । ୧୧ ।
ହରିହରଙ୍କୁ (୧) ସେସ୍ଥାନେ ଦେଖି ବଣ୍ଠାଧାର
ସ୍ତୁତି ଆରମ୍ଭିଲେ ତାଙ୍କ ଅଗ୍ରତେ କେବଳ । ୧୨ ।
ଅନନ୍ତର ତାଙ୍କଠାରୁ ପାଇ ଅନୁମତି
ଅବସ୍ଥାନ କଲେ ତହିଁ ଦେବ ଉମାପତି । ୧୩ ।

ଇତିଶ୍ରୀକପିଳସଂହିତାୟାଂ କାଶୀମହେଶାଗମନଂ ନାମ ଏକାଦଶୋଽଧ୍ୟାୟଃ ।

—o—

## ଦ୍ୱାଦଶୋଽଧ୍ୟାୟଃ ।

ଋଷୟ ଊଚୁଃ ।

ଏକାମ୍ରବନରେ ଥିବା ତୀର୍ଥମାନଙ୍କର
ସଂକ୍ଷେପରେ ବିବରଣ କହ ମୁନୀଶ୍ୱର । । ୧ ।

---

( ୧ ) କାଶୀବିଶ୍ୱେଶ୍ୱରଙ୍କର ଆଗମନପୂର୍ବରୁ ଭୁବନେଶ୍ୱରରେ ହରିହରମୂର୍ତ୍ତି ଅଧିଷ୍ଠିତଥିଲେ

ଭରଦ୍ୱାଜ ଉବାଚ ।

ଅନନ୍ତର ବହୁକାଳପରେ ସେ ଅଚ୍ୟୁତ (୧)
କୋଠୀଲିଙ୍ଗାକାରେ ତହିଁ ହେଲେ ଆବିର୍ଭୂତ । ୨ ।
ପଥରଖୋଲମଧ୍ୟରୁ ବିନ୍ଦୁ ବିନ୍ଦୁ ଜଳ
ନିର୍ଗତ ହୋଇଲା ତହିଁ ସ୍ୱଚ୍ଛ ଅନାବିଳ । ୩ ।
ସେହିଦିନୁ ବିନ୍ଦୁସର ହୋଇଲା ବିଖ୍ୟାତ
ଏଥି ସ୍ନାନ କଲେ ହୁଏ ବୈକୁଣ୍ଠ (୨) ପ୍ରାପତ । ୪ ।
ଶିବପ୍ରସାଦରୁ ଗଙ୍ଗାଆଦିତୀର୍ଥମାନେ
ପ୍ରକାଶିତହେଲେ ଆସି ମିଳି ସେହି ସ୍ଥାନେ । ୫ ।
ସଙ୍କ୍ରମଣ ଚତୁର୍ଦ୍ଦଶୀ ଗ୍ରହଣକାଳରେ
ଅମାବାସ୍ୟା ପୂର୍ଣ୍ଣିମାଦି ତିଥିମାନଙ୍କରେ । ୬ ।
ଦ୍ୱାରାବତୀ ନୈମିଷ (୩) ବଦ୍ରିକାଦି କ୍ଷେତ୍ରରେ
ସ୍ନାନକଲେ ଯେଉଁ ଫଳ ହୁଏ ତା ଏସ୍ଥଳେ । ୭ ।
ସକଳତୀର୍ଥ ଫଳଦ ସେହି ସରୋବର
ମନ୍ଦିରସମୀପେ ସୁଶୋଭିତ ନିରନ୍ତର । ୮ ।
ଥିବାରୁ ଏଠାରେ ତ୍ରିଭୁବନର ଈଶ୍ୱର
ସକଳଦେବତାଙ୍କର ସର୍ବଦା ସଞ୍ଚାର । ୯ ।
ସ୍ନାନଦାନ ଯେ କରେ ନିତ୍ୟ ଏଥି ଭକ୍ତ ନର
ନିଶ୍ଚୟ ହୁଅଇ ତାର ଅଭୀଷ୍ଟ ସଫଳ । ୧୦ ।

ଇତିଶ୍ରୀକପିଳସଂହିତାୟାଂ ବିନ୍ଦୁସାଗରସମ୍ଭବୋ ନାମ ଦ୍ୱାଦଶୋଽଧ୍ୟାୟଃ ।



( ୧ ) ଅବିନାଶୀ
( ୨ ) ନିତ୍ୟକଳାମପ୍ରସ୍ଥାନ ।
[ ୩ ] ନିମିଷମଧ୍ୟରେ ଦାନବବଳ ଏଠାରେ କ୍ଷୟପ୍ରାପ୍ତ ହୋଇଥିବାରୁ ଏହାର ନାମ ନୈମିଷକ୍ଷେତ୍ର ହୋଇଅଛି ।

# ତ୍ରୟୋଦଶୋଽଧ୍ୟାୟଃ ।

ଋଷୟ ଊଚୁଃ ।

ସେ କପିଳସ୍ଥିତ ଦେବଦେବୀମାନଙ୍କର
ମାହାତ୍ମ୍ୟ ଜାଣିବାଇଚ୍ଛା ହେଉଛୁ ଅମ୍ଭର । ୧ ।

ଭରଦ୍ୱାଜ ଉବାଚ ।

ଏହିଠାରେ ପରଂବ୍ରହ୍ମ ଲିଙ୍ଗରୂପ (୧) ଧରି
ବିଜେ କରିଛନ୍ତି ଶଙ୍ଖଚକ୍ରଧାରୀ ହରି । ୨ ।
ଅଗ୍ରାହ୍ୟ ଶିବନୈବେଦ୍ୟ ଏହି ଶାସ୍ତ୍ରମତ
ଏହିଠାରେ ହୋଇଅଛି ସଦା ବିବର୍ଜ୍ଜିତ । ୩ ।
ଅଭୀଷ୍ଟଦ ଚନ୍ଦ୍ରେଶ୍ୱର ତହିଁ ଇନ୍ଦ୍ରେଶ୍ୱର
ଯମେଶ୍ୱର ହରିହର ଈଶାନଈଶ୍ୱର । ୪ ।
ଏଆଦି ଲିଙ୍ଗମାନଙ୍କୁ ଦେଖଇ ଯେ ବାରେ
ତାହାର ସକଳବାଞ୍ଛା ପୂର୍ଣ୍ଣ ହେସ୍ଥାନରେ । ୫ ।
ଶାଲ୍ମଳୀପାଦପ (୨) ତହିଁ ଅଛି ଦକ୍ଷିଣରେ
ଦୂରକରେ ସର୍ବପାପ ଦର୍ଶନମାତ୍ରରେ । ୬ ।
ସାବିତ୍ରୀ ପାର୍ବତୀ ବିରୂପାକ୍ଷ ବିଘ୍ନେଶ୍ୱର
ଏହାଙ୍କ ଦର୍ଶନ ହୁଏ ସର୍ବକ୍ଳେଶହର । ୭ ।
ଏକାରଣେ ବ୍ରହ୍ମାଆଦି ସର୍ବଦେବଗଣ
ଏହାଙ୍କୁ ଆସି ପ୍ରତ୍ୟେକେ କରନ୍ତି ଭଜନ ( ୩ ) । ୮ ।
ଭକ୍ତିରେ ଯେ ହରଙ୍କୁ କରେ ଆରାଧନ
ତାର ଗୋହତ୍ୟାଦିପାପ ହୁଅଇ ଖଣ୍ଡନ । ୯ ।
ଦେବମାନ୍ୟ ବୃହସ୍ପତିଙ୍କର ଆଦେଶରେ
ଅଧିଷ୍ଠି ହେଲେ ଇନ୍ଦ୍ର ଏ ସ୍ଥାନରେ । ୧୦ ।

ଇତିଶ୍ରୀକପିଳସଂହିତାୟାଂ ଶକତପଃ ସିଦ୍ଧି ର୍ନାମ ତ୍ରୟୋଦଶୋଽଧ୍ୟାୟଃ ।

—o—

( ୧ ) ତ୍ରିମୂର୍ତ୍ତି ।
( ୨ ) ଶିମୂଳିଗଛ ।
( ୩ ) ଇନ୍ଦ୍ରପ୍ରଭୃତି ।

## ଚତୁର୍ଦ୍ଦଶୋଽଧ୍ୟାୟଃ ।

### ଭରଦ୍ୱାଜ ଉବାଚ ।

ବୈକୁଣ୍ଠଭୁବନ ଛାଡ଼ି ପ୍ରଭୁ ଜଗପତି
ଏକାମ୍ରବନରେ କାହିଁଅଛନ୍ତି ବସତି । ୧ ।
ବିଷ୍ଣୁରୂପୀ ଜଗଦ୍‌ବ୍ୟାପୀ ସେହୁ ଜନାର୍ଦ୍ଦନ
ହରରୂପେ ଅବସ୍ଥିତ ଜଗତଜୀବନ । ୨ ।
ଅନୁଷ୍ଠାନରତ ସର୍ବ ଦେବର୍ଷିଗଣ !
ଦର୍ଶନରେ ଲଭିଥିଲେ ସଂସାରୁ ମୋଚନ (୧) । ୩ ।
ବିନ୍ଦୁହ୍ରଦେ କରସ୍ନାନ ସଦା ସାଧୁଜନ
ବିଘ୍ନମୂରଙ୍କୁ ଦେଖିବ ହୋଇ ଏକମନ । ୪ ।
ଉଗ୍ରେଶ୍ୱର ସୂକ୍ଷ୍ମେଶ୍ୱର କପିଳାସେଶ୍ୱର
ବିଶ୍ୱେଶ୍ୱର ନନ୍ଦୀଶ୍ୱର ସ୍ୱର୍ଣ୍ଣଜାଲେଶ୍ୱର । ୫ ।
ବ୍ରହ୍ମେଶ୍ୱର ଅଶ୍ୱିଷ୍ଟଦ ଗୋକର୍ଣ୍ଣଈଶ୍ୱର
ଏଥିଏ ବହୁତ ଲିଙ୍ଗେ ପୂର୍ଣ୍ଣ ଏହିସ୍ଥଳ । ୬ ।
ଏହାଙ୍କ ଦର୍ଶନ ହୁଏ ଦୁରିତଧ୍ୱଂସନ
ମହାନିର୍ବାଣ ପ୍ରାପ୍ତିର ପରମ କାରଣ । ୭ ।
ଆଶ୍ୱିନ ଅମାବାସ୍ୟାରେ ଭକ୍ତିସହକାରେ
ସୂକ୍ଷ୍ମେଶ୍ୱର ପାର୍ଶ୍ୱରେ ଯେ ପିଣ୍ଡଦାନ କରେ । ୮ ।
ପୂର୍ବକୃତ ପାପ ତାର ହୁଅଇ ମୋଚନ ।
ଅନ୍ତକାଳେ ମୋକ୍ଷପ୍ରାପ୍ତି ହୁଏ ମୁନିଗଣ ! । ୯ ।
ସର୍ବତୀର୍ଥଫଳପ୍ରଦ କପିଳାକୁଣ୍ଡରେ (୨)
ସ୍ନାନମାତ୍ରେ ସ୍ଥାନ ପ୍ରାପ୍ତ ମହେଶଲୋକରେ । ୧୦ ।

ଇତିଶ୍ରୀକପିଳସଂହିତାୟାଂ ଲିଙ୍ଗବର୍ଣ୍ଣନଂ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।



(୧) ପୁନର୍ଜନ୍ମରହିତ ।
(୨) ଏହି କୁଣ୍ଡର ଜଳ ପରମପବିତ୍ର ।

## ପଞ୍ଚଦଶୋଽଧ୍ୟାୟଃ ।

ଋଷୟ ଊଚୁଃ ।

ଭକତହୃଦୟସେବୀ ପ୍ରଭୁ ସର୍ବେଶ୍ୱର
କପର ସ୍ଥାପିତ ହେଲେ କହ ମୁନିବର ।। ୧ ।

ଭରଦ୍ୱାଜ ଉବାଚ ।

ଦୟାଶୀଳ ଅଯୋଧ୍ୟାଧିପତିଙ୍କ କୁମର
ସୁମନା ନାମେ ସୁବିଖ୍ୟାତ ଜଗତ ଈଶ୍ୱର । ୨ ।
ସେହି ପରନ୍ତପ (୧) ସର୍ବଗୁଣସମନ୍ୱିତ
ପିତୃସତ୍ୟ ପାଳନରେ ସଦା ଥିଲେ ରତ । ୩ ।
ହରଙ୍କର ଏଥି କରି ସେବନ ପୂଜନ
ଅଭୀଷ୍ଟଫଳ ପ୍ରାପତ ହେଲେ ଅଗଣନ । ୪ ।
ପୂର୍ବକାଳେ ଦେବାସୁରଯୁଦ୍ଧେ ପୁରନ୍ଦର
ଅନେକବାର ହାରଣ ହେଲେ କ୍ଷୀଣବଳ । ୫ ।
ବକୁଳ ଚମ୍ପକ ଆଦ ବୃକ୍ଷରେ ଶୋଭିତ
ନାନାଜନ୍ତୁ ସମାକୁଳ ସଦା ଅବିହତ । ୬ ।
ଏହିସ୍ଥାନେ ଉପସ୍ଥିତ ହୋଇ ଶଚୀପତି
ଇନ୍ଦ୍ରେଶ୍ୱରଙ୍କ ପୂଜନ କଲେ ଦୃଢ଼ମତି (୨) । ୭ ।
ହୋଇଣ ପ୍ରସନ୍ନ ଦେବ ଦେଲେ ତାଙ୍କୁ ବର
ଦେବସଙ୍ଗ । କର ଯୁଦ୍ଧ ନହୋଇ କାତର । ୮ ।
ପରେ ଜୟଲାଭ କରି ସ୍ୱର୍ଲୋକ ଈଶ୍ୱର
ସଂହାରିଲେ ଅଳ୍ପକାଳେ ଅସୁର ନଗର । ୯ ।
ଏହେତୁ ସମସ୍ତ ଦେବ ହୋଇ ଏକତ୍ରିତ
ସ୍ତବନ୍ତି ସେହି ଦେବଙ୍କ ମହିମା ବିଖ୍ୟାତ । ୧୦ ।

ଇତି ଶ୍ରୀକପିଳସଂହିତାୟାଂ ଇନ୍ଦ୍ରେଶ୍ୱରାଖ୍ୟାନଂ ନାମ ପଞ୍ଚଦଶୋଽଧ୍ୟାୟଃ ।

---

( ୧ ) ଶତ୍ରୁସଂହାରକାରୀ ।
( ୨ ) ସ୍ଥିରବୁଦ୍ଧି ।

# ଷୋଡଶୋଽଧ୍ୟାୟଃ ।

## ଭରଦ୍ୱାଜ ଉବାଚ ।

ମହେଶଙ୍କ ଦକ୍ଷିଣେ କେଦାର ଈଶ୍ୱର
ଯାହାଙ୍କୁ ଦେଖିଲେ ନର ହୁଅଇ ଅମର । ୧ ।
ପୂର୍ବକାଳେ ନହୁଷନାମରେ (୧) ଏକ ରାଜା
ବିଶେଷଭକ୍ତିରେ ତାଙ୍କୁ କରୁଥିଲେ ପୂଜା । ୨ ।
କେଦାରକୁଣ୍ଡରେ ସ୍ନାନ କରି ଯେଉଁ ଜନ
ଗୌରୀଙ୍କୁ ଦେଖଇ ନିତ୍ୟ ହୋଇ ପୂତମନ । ୩ ।
ଏକାଗ୍ରଚିତ୍ତରେ ତହିଁ ମନ୍ତ୍ର ଜପ କଲେ
ମାନବ ସିଦ୍ଧି ଲଭଇ ଅଳ୍ପସମୟରେ । ୪ ।
ଦେବଗଣ ଦକ୍ଷପ୍ରଜାପତିଙ୍କ ଯଜ୍ଞରେ
ଶିବଙ୍କୁ ଛାଡ଼ି ହବିର୍ଭାଗାସକ୍ତ ହେଲେ । ୫ ।
ଦାକ୍ଷାୟଣୀ (୨) ସ୍ୱାମିଙ୍କର ଜାଣି ଅପମାନ
ଯଜ୍ଞକୁଣ୍ଡରେ ଜୀବନ କଲେ ବିସର୍ଜନ । ୬ ।
ଶିବ ବିଘ୍ନ ଉତ୍ପାଦନ କରି ସେ ସ୍ଥାନରେ
କଲେଅବସ୍ଥାନ ହିମାଳୟପର୍ବତରେ । ୭ ।
ଉପଯୁକ୍ତ ସ୍ଥଳ ଦେଖି ତହିଁ ତ୍ରିଣେତ୍ର
କଠୋର ତପ ଆରମ୍ଭ କଲେ ନିରନ୍ତର । ୮ ।
ଭବପୂର୍ବପତ୍ନୀ ଆସି ପାର୍ବତୀରୂପରେ
ଜାତ ହୋଇବାରୁ ତାଙ୍କ ଶୁଭକାମନାରେ । ୯ ।
ନଗରାଜ ତନୟାକୁ ବନେ ଆଦେଶିଲେ

---

(୧) ଯଯାତିରାଜାଙ୍କର ପିତା ନହୁଷ, ବ୍ରାହ୍ମଣର ଅପମାନହେତୁ ଅଗସ୍ତ୍ୟ ମୁନିଙ୍କ ଶାପରେ ଇନ୍ଦ୍ରପଦରୁ ଭ୍ରଷ୍ଟହୋଇ ସର୍ପତ୍ୱ ପ୍ରାପ୍ତହୋଇଥିଲେ ।

(୨) ଦକ୍ଷପ୍ରଜାପତିଙ୍କର କନ୍ୟା ।

ହୁଅ ଅନୁକ୍ଷଣେ ରତ ଶିବପୂଜାଦିରେ (୩) । ୧୦ ।
ଏସମୟେ କାମଦେବ ଶରସନ୍ଧାନରେ
ପ୍ରବୃତ୍ତହେବାରୁ ଶିବ ତାଙ୍କୁ ଭସ୍ମକଲେ । ୧୧
ଅନନ୍ତର ପତ୍ନୀଶୀତ ହୋଇସେ ସ୍ଥାନରୁ
ବାହାରିଲେ ସପତ୍ନୀକ ହୋଇ ଜଗଦ୍‌ଗୁରୁ । ୧୨ ।
ବାରାଣସୀ ଧାମେ ଯାଇ ଅଧିଷ୍ଠାନ କଲେ
କେତେକ ସମୟ ଅତି ସୁଖେ କଟାଇଲେ । ୧୩ ।
ନାରଦଙ୍କ ଆଦେଶରେ ଦେବ ଉମାପତି
ଏକାମ୍ରବନରେ ଆସି କଲେକ ବସତି । ୧୪ ।
ହିମାଳୟ ବନେ ଆସି ହରପାର୍ବତୀଙ୍କୁ
ଛଦ୍ମବେଶରେ (୪) ଦେଖିଣ ଗଲେ ସ୍ୱସ୍ଥାନକୁ । ୧୫ ।

ଇତିଶ୍ରୀକପିଳସଂହିତାୟାଂ ଏକାମ୍ରେ ହିମାଳୟାଗମନଂ ନାମ ଷୋଡଶୋଽଧ୍ୟାୟଃ ।

## ସପ୍ତଦଶୋଽଧ୍ୟାୟଃ ।

ଭରଦ୍ୱାଜ ଉବାଚ ।

ଗନ୍ଧବତୀ ନାମେ ନଦୀ ଅଛି ସେହି ସ୍ଥାନେ
ସକଳପ୍ରାଣିର କ୍ଳେଶ ଯେ ହରଇ ଷଣେ । ୧ ।
ସପ୍ତଋଷିମାନେ (୧) ଯହିଁ କରଣ ସ୍ନାହାନ
ଲଭିଥିଲେ ଅନାୟାସେ ଅଲଭ୍ୟ ନିର୍ବାଣ । ୨ ।
ପୂର୍ବେ ହିମାଳୟ ତହିଁ କେଦାରଈଶ୍ୱର
ଆରାଧନା କରି ଲଭିଥିଲେ ଏକ ବର । ୩ ।

---

(୩) ତପସ୍ୟାସକ୍ତହରଙ୍କର ଅର୍ଚ୍ଚନା ଓ ସେବା ଇତ୍ୟାଦିକାର୍ଯ୍ୟରେ ।
(୪) ଗୋପନଭାବରେ ।
(୧) ମରୀଚ, ଅତ୍ରି, ଅଙ୍ଗିର, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ, ଏହିମାନେ ସପ୍ତର୍ଷିନାମରେ ଅଭିହିତ ।

ପରେ ଗଙ୍ଗା ଯେତେବେଳେ ପ୍ରଚ୍ଛନ୍ନଭାବରେ
ପ୍ରବାହିତ ହୋଇଥିଲେ ନବ ବିଭାଗରେ । ୪ ।
ତହିଁ ପୁନଃ ପୁନା ରେବା ଗଙ୍ଗା ଗୋଦାବରୀ
କୃଷ୍ଣା ବୈତରଣୀ ତଥା ଜାହ୍ନବୀ (୧) କାବେରୀ । ୫ ।
ଏହି ବିଭାଗରେ ପୁଣି ଗୋମତୀ ମିଶିତା
ଏକସ୍ଥାନେ ହୋଇଛନ୍ତି ସଦା ବିରାଜିତା । ୬ ।

ଋଷୟ ଊଚୁଃ ।

କେଉଁ କ୍ଷେତ୍ରେ ମୃତ୍ୟୁହେଲେ ହୁଅଇ ମୁକତ
ବିନା ଜପ ଅନୁଷ୍ଠାନେ, କହ ଧୀରମତ ! । ୭ ।

ଭରଦ୍ୱାଜ ଉବାଚ ।

ବିବିଧ ଗନ୍ଧବୃକ୍ଷରେ ହୋଇଛି ମଣ୍ଡିତ
ଅବିରୋଧେ ଜନ୍ତୁମାନେ ଯହିଁ ସଦା ସ୍ଥିତ । ୮ ।
ଗନ୍ଧବତୀ ଯହିଁ ସର୍ବତୀର୍ଥଫଳଦାନେ
ଗୋପନରେ ସୁଶୋଭିତ ଅଛି ସେହି ସ୍ଥାନେ । ୯ ।
ଏହି ଏକାମ୍ରକାନନରେ ହେଲେ ପ୍ରାଣୀ ମୃତ
ଅଲଭ୍ୟମୁକ୍ତି ଲଭଇ ଏ ଶାସ୍ତ୍ରସମ୍ମତ । ୧୦ ।

ଇତି ଶ୍ରୀକପିଳସଂହିତାୟାଂ ଗନ୍ଧବତୀମାହାତ୍ମ୍ୟଂ ନାମ ସପ୍ତଦଶୋଽଧ୍ୟାୟଃ ।

---

## ଅଷ୍ଟାଦଶୋଽଧ୍ୟାୟଃ ।

ଭରଦ୍ୱାଜ ଉବାଚ ।

ପାର୍ବତୀପାଦଜଃ ପୂତ ମହେଶତୀର୍ଥର
ଉତ୍ପତ୍ତିକଥା କହୁଛି ଅନନ୍ତ ବିସ୍ତର । ୧ ।

---

( ୧ ) ଜହ୍ନୁମୁନିଙ୍କର କନ୍ୟା ।

ତ୍ରିତାପନାଶକ (୧) ସଦା ସେହି ତୀର୍ଥବର
ସକଳସୁରସେବିତ ଅତି ପୁଣ୍ୟକର । ୨ ।
ହ୍ରୁମିଳନାମରେ ପୂର୍ବେ ଏକଇ ଅସୁର
ଏକାଧିକ ଶତପୁତ୍ର ହୋଇଥିଲା ଯାର । ୩ ।
ଦେବବ୍ରାହ୍ମଣଘାତକ ଥିଲେ ସେହିମାନେ
ପରର ଅନିଷ୍ଟ ସଦା ଭାବୁଥାନ୍ତି ମନେ । ୪ ।
କୀର୍ତ୍ତି, ଦାସ, ନାମେ ତାଙ୍କ ଉଭୟ ସନ୍ତାନ
ମୃଗୟା କରିବାପାଇଂ ଗଲେ ଘୋରବନ । ୫ ।
ଜନ୍ତୁଛଳେ (୨) ଅନେକତ ଭାଇଙ୍କୁ ମାରିଣ
ପିତୃଭୀତହୋଇ ଗଲେ ଏକାମ୍ରକାନନ । ୬ ।
ପାର୍ବତୀଙ୍କୁ ଦେଖି ତହୁଁ ବିବିଧ ବାକ୍ୟରେ
ପରିହାସ ଆରମ୍ଭିଲେ ପ୍ରଫୁଲ୍ଲ ଅନ୍ତରେ । ୭ ।
ରାଗାନ୍ୱିତ ହୋଇ ଦେବୀ କୀର୍ତ୍ତିଙ୍କୁ ଦକ୍ଷିଣେ
ଦାସଙ୍କୁ ବାମପାଦରେ ଚାପିଲେ ସେକ୍ଷଣେ । ୮ ।
ମହେଶନାମକ ତୀର୍ଥ ତହୁଁ ଆବିର୍ଭୂତ
ଯାହାର ଜଳ ପବିତ୍ର ଭୁବନବିଦିତ । ୯ ।
ଫାଲ୍‌ଗୁନ ଶୁକ୍ଳଅଷ୍ଟମୀ ଦିନ ଏଥିସ୍ନାନ
କରଇ, ଯେ ଭକ୍ତ ଲଭେ ଶିବଲୋକେ ସ୍ଥାନ । ୧୦ ।

କପିଳ ଉବାଚ ।

ତହିଁ ସ୍ୱର୍ଣ୍ଣକୂଟାଚଳେ ଚାତୁର୍ମାସ୍ୟବ୍ରତ (୩)
ବହିଲେ ମୁକତି ହୁଏ ଏସର୍ବ ବିଦିତ । ୧୧ ।
କାଶୀଠାରୁ ଏଥି ଫଳ ସହସ୍ର ଗୁଣରେ
କୋଟୀତୀର୍ଥ ଫଳପ୍ରାପ୍ତି ହୁଅଇ ଏଠାରେ । ୧୨ ।

---

(୧) ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ।
(୨) ସିଂହବ୍ୟାଘ୍ରାଦି ଜନ୍ତୁମାନଙ୍କୁ ମାରିବାକପଟରେ ।
(୩) ଆଷାଢ଼ଶୁକ୍ଳପୂର୍ଣ୍ଣିମାଠାରୁ କାର୍ତ୍ତିକଶୁକ୍ଳପୂର୍ଣ୍ଣିମାପର୍ଯ୍ୟନ୍ତ ଏହି ବ୍ରତ ଭୁବନେଶ୍ୱରଠାରେ ଅନୁଷ୍ଠିତ ହୁଏ ।

ପ୍ରଭବନ ସେହିଠାରେ ପ୍ରଭାତେ ସ୍ନାହାନ
କୁଶାସନରେ ରାତ୍ରରେ କରିବ ଶୟନ । ୧୩ ।
ଶ୍ରାବଣରେ ଶାକ ଭାଦ୍ର ଆଶ୍ୱିନମାସରେ
ଦୁଗ୍ଧ ମାଂସ ତୈଳ ଆଦ ଛାଡ଼ିବ ସେ ସ୍ଥଳେ । ୧୪ ।
ସ୍ନାନ, ଦେବାବଲୋକନ, ପ୍ରଦକ୍ଷିଣ (୪) କରି
ଜପ ତପ ଯଥାବିଧି କରିବ ବିସ୍ତରି । ୧୫ ।
ଶୟନୀୟ ଏହି ବ୍ରତ ଉହିଁ ଆଚରିଲେ
ଅଶ୍ୱମେଧାଦିଯଜ୍ଞର ଫଳ ହୁଏ ଭଲେ । ୧୬ ।
ଇତି ଶ୍ରୀକପିଳସଂହିତାୟାଂ ଶୟନୀୟ ବ୍ରତକଥନଂ ନାମ
ଅଷ୍ଟାଦଶୋଽଧ୍ୟାୟଃ ।

—————o—————

## ଊନବିଂଶୋଽଧ୍ୟାୟଃ ।

ଭରଦ୍ୱାଜ ଉବାଚ ।

ଅହେ ମୁନିଗଣ ! ଏହି ଏକାମ୍ରବନର
ଯାତ୍ରା (୧) କଥନରେ ମୁହିଁ ହେଉଛି ତତ୍ପର । ୧ ।
ମାର୍ଗଶିର କୃଷ୍ଣପକ୍ଷ ଅଷ୍ଟମୀଦିନରେ
ମାଘର ଅସିତ ପକ୍ଷ ସପ୍ତମୀତିଥିରେ । ୨ ।
ଫାଲ୍‌ଗୁନର ଶୁକ୍ଳ ପକ୍ଷ ଶନିବାସରରେ
ପବିତ୍ରସ୍ଥମାନ ଏଥି ଖ୍ୟାତ ଜଗତରେ । ୩ ।
ଅଷ୍ଟ ଅଶୋକକଳିକା ଅଶୋକାଷ୍ଟମୀରେ
ମନ୍ତ୍ରପୂର୍ବକ ସେଠାରେ ଯେ ଭକ୍ଷଣ କରେ । ୪ ।
ସମସ୍ତ ଶୋକରୁ ସେହି ପାଇଣ ମୋଚନ
ଅନ୍ତକାଳେ ଶିବଲୋକେ କରଇ ଗମନ । ୫ ।

---

( ୪ ) ପରି ଭ୍ରମଣ ।

(୧) ଦେବତା ମାନଙ୍କର ଉତ୍ସବ ଦର୍ଶନ ।

ଚୈତ୍ର ଶୁକ୍ଳାଷ୍ଟମୀ, ତଥା ଚତୁର୍ଦ୍ଦଶୀ ଦିନ
ପାର୍ବତୀଙ୍କ ରଥଯାତ୍ରା, ଦମନକାର୍ଚ୍ଚନ । ୬ ।
ଇତ୍ୟାଦିପର୍ବରେ ଯାଇ ଏକାମ୍ରକାନନ
ଦେଖିବ ହର ପାର୍ବତୀ ଉତ୍ସବବିଧାନ । ୭ ।

କପିଳ ଉବାଚ ।

ଏହା ଶୁଣି ସର୍ବ ମୁନି (୧) ହୋଇ ଏକଚିତ୍ତ
ଗଙ୍ଗା ଗୟା ଗୋଦାବରୀ ଭ୍ରମଣେ ଉଦ୍ୟତ । ୮ ।
ଉତ୍କଳର ବୈତରଣୀଜଳେ କରି ସ୍ନାନ
ବିରଜା ଦେବୀଙ୍କୁ ଦେଖି ହେଲେ ତୁଷ୍ଟମନ । ୯ ।
ଏକାମ୍ରର ହର୍ମ୍ମ୍ୟକୂଟେ କରି ବହୁତପ
ଅନ୍ତକାଳେ ପାଇଥିଲେ ଅନନ୍ତସ୍ୱରୂପ (୨) ୧୦

ଇତି ଶ୍ରୀକପିଳସଂହିତାୟାଂ ଋଷିମୁକ୍ତି ନାମ ଊନବିଂଶୋଽଧ୍ୟାୟଃ ।

---

## ବିଂଶୋଽଧ୍ୟାୟଃ ।

କପିଳ ଉବାଚ ।

ଅଛନ୍ତି ଏହି ଉତ୍କଳେ ଯେତେ ନଦୀଗଣ
ତହିଁ ମହାନଦୀ ନୃପ ! ସର୍ବଶ୍ରେଷ୍ଠତମ । ୧ ।
ପୂର୍ବକାଳେ ଭୃଗୁମୁନି ତପଃ ପ୍ରଭାବରେ
ଆଣିଥିବାରୁ ଭାର୍ଗବୀ ଖ୍ୟାତ ଜଗତରେ । ୨ ।
ଏଥୁଁ ଜାତ ପୁଷ୍ୟା ଭଦ୍ରା ଉଭୟ ସରିତ
ଏକାମ୍ରଅନତିଦୂରେ ହୁଏ ସୁଶୋଭିତ । ୩ ।

---

(୧) ସନକାଦି ଋଷିବୃନ୍ଦ ।
(୨) ଶିବତ୍ୱ ।

ପ୍ରାଚୀ (୧) ଗୁପ୍ତ ସରସ୍ୱତୀ ସାଗରଗାମିନୀ
ସଦା ମନୋହର ବିଶେ ତ୍ରୈଲୋକ୍ୟପାବନୀ । ୪
ଯାହାର ଜଳ ଅଶୁଦ୍ଧ ସ୍ୱାଦୁ ସୁବିଖ୍ୟାତ
ଋଷି ମୁନିଙ୍କର ଯେହୁ ଥିଲା ସମାଦୃତ । ୫ ।
ପୂର୍ବକାଳେ ଏକ ମୁନି ଦଧୀଚ ନାମରେ
ଅଥର୍ବମୁନିତନୟ ଥିଲେ ଜଗତରେ । ୬ ।
ମିତାଚାରୀ ଦୟାଶୀଳ ସକଳବନ୍ଦିତ
କଠୋରତପ ସାଧନେ ଥିଲେ ସଦାସକ୍ତ । ୭ ।
ଇନ୍ଦ୍ରାଦି ଦେବତାମାନେ (୨) ଯାହାଙ୍କ ଅସ୍ଥିରେ
ବଜ୍ରକୁ ନିର୍ମାଣି ବୃତ୍ରାସୁରେ ବନାଶିଲେ । ୮ ।
ତାହାଙ୍କର ତପୋବଳେ ପ୍ରାଚୀ ଏହି ସ୍ଥଳେ
ବିରାଜିତ ହୋଇଅଛୁ ପବିତ୍ର ପୟରେ । ୯ ।
ଯାହାର ନିକଟବର୍ତ୍ତୀ ଦେବ କପିଳେଶ୍ୱର
ତ୍ରିବେଣୀସଙ୍ଗମ ଦୃଶ୍ୟ ଯହିଁ ମନୋହର । ୧୦ ।

ଇତିଶ୍ରୀକପିଳସଂହିତାୟାଂ ଉତ୍କଳନଦୀମାହାତ୍ମ୍ୟଂ ନାମ ବିଂଶୋଽଧ୍ୟାୟଃ ।



## ଏକବିଂଶୋଽଧ୍ୟାୟଃ ।

### କପିଳ ଉବାଚ ।

ଶୁଣ ଏବେ ମନଦେଇ ଅହେ ସତ୍ୟବ୍ରତ !
ସଙ୍ଗପତେ ଜ୍ଞାନଯୋଗ ସକଳ ଅଦ୍ଭୁତ । ୧ ।
ଶିବ ନନ୍ଦିକେଶ୍ୱରଙ୍କୁ (୧) ଯାହା କହିଥିଲେ
ଅବଗତ ହୁଅ ତାହା ବିଶୁଦ୍ଧଚିତ୍ତରେ । ୨ ।

---

( ୧ ) ଉତ୍କଳର ସୁବିଖ୍ୟାତ ନଦୀବିଶେଷ ।
[ ୨ ] ଇନ୍ଦ୍ର, ବାରୁଣ, ଯମ ଓ କୁବେରପ୍ରଭୃତି ।
[ ୧ ] ମହାଦେବଙ୍କର ଅନୁଚର ।

କାମ କ୍ରୋଧ ଲୋଭ ମୋହ କରିବ ବର୍ଜ୍ଜନ
ପରହିତେ ରତ ହେବ ସତ୍ୟପରାୟଣ । ୩ ।
ସର୍ବପ୍ରାଣିଠାରେ ସମଭାବ ଆଚରିବ
ନିଜ ପର ଏହିଜ୍ଞାନ କେବେ ନକରିବ । ୪ ।
ଆକାଶ ପବନ ମଧ୍ୟେ ନାହିଁ ଯଥା ଭେଦ
ହରିହରମଧ୍ୟେ ତଥା ନଥାଏ ପ୍ରଭେଦ । ୫ ।
ଆବର୍ତ୍ତବୁଦ୍‌ବୁଦ ପୁଣି ତରଙ୍ଗ ଯେରୂପ
ମିଶିଗଲେ ସର୍ବ ହୁଏ ଏକି ଜଳରୂପ । ୬ ।
ଦୁର୍ଗା କାଳୀ ଚଣ୍ଡୀ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ତତ୍ତ୍ୱରେ ବିଶେଷବୁଦ୍ଧି ଏଥି କର ଦୂର । ୭ ।
ଅନିତ୍ୟସଂସାରାସକ୍ତ ମୂଢଜନଗଣ
ସବୁଠାରେ ଭେଦଜ୍ଞାନ କରନ୍ତି ବିଧାନ । ୮ ।
ଅଷ୍ଟାକ୍ଷର ମନ୍ତ୍ର ଏକ ଲକ୍ଷ ଜପକଲେ
ଅଣିମାଷ୍ଟସିଦ୍ଧି ଲଭନ୍ତି ଲୋକେ ଏ ସ୍ଥାନରେ । ୯ ।
ଯେ ଯେଉଁ ସ୍ଥାନରେ ତାଙ୍କୁ ଯେ ଭାବେ ଭାବଇ
ତାହାଙ୍କୁ ସେରୂପେ ସେହି ଅବଶ୍ୟ ତାରଇ । ୧୦ ।
ହରିନାମ ଅଟେ ସାର ଏହି ଜଗତରେ
ଏହାର କୀର୍ତ୍ତନ ସର୍ବପାପତାପ ହରେ । ୧୧ ।

ଇତି ଶ୍ରୀକପିଳସଂହିତାୟାଂ ଜ୍ଞାନଯୋଗୋ ନାମ ଏକବିଂଶୋଽଧ୍ୟାୟଃ ।



ସମାପ୍ତୋଽୟଂ ଗ୍ରନ୍ଥଃ ।

---

କୃଷ୍ଣଚନ୍ଦ୍ରସ୍ୟ ପୁତ୍ରେଣ ପୁରୁଷୋତ୍ତମବାସିନା ।
ଗୋପୀନାଥାଖ୍ୟ ବିପ୍ରେଣ ସଂହିତେୟଂ ବିନିର୍ମିତା ॥

Printed by A. C. Chakraverty O. P. Works, Puri 1923.